# କଥା-କୁସୁମ



ପ୍ରଥମ ସଂସ୍କରଣ

୧୯୩୭

ଅଷ୍ଟଦୁର୍ଗ-ରାଜମାତା

ଶ୍ରୀମତୀ କୃଷ୍ଣପ୍ରିୟା ମହାଦେବୀ



ରାଜା ଶ୍ରୀ ରାଧାନାଥ ଦେବ ବର୍ମା
ରାଜା ଓ ରୁଲିଙ୍ଗଚିଫ୍, ଅଠଗଡ଼ ଷ୍ଟେଟ୍

[illegible]

[illegible]

ଶ୍ରୀମତୀ ସ୍ୱର୍ଣ୍ଣମଞ୍ଜରୀ ଦେବୀ—

କୋମଳ କରକମଳେଷୁ

ସ୍ନେହୋପହୃତଂ

ଅୟି ସୁଲକ୍ଷଣେ ପୁତ୍ରବଧୂ !

ତୁମ୍ଭର ସୁନ୍ଦର କୋମଳ ମଧୁର ବ୍ୟବହାରରେ ମୁଁ ମୁଗ୍ଧ ହୋଇ ଭାବେ—ତୁମ୍ଭପରି ପୁତ୍ରବଧୂ ଲାଭ କରିବା ଅଳ୍ପ ତପସ୍ୟାର ଫଳ ନୁହେ । ସେହି କୋମଳ ସ୍ୱଭାବରୁ ସିନା ତୁମ୍ଭେ ନିଜ ଦୁର୍ଗର ଚଉଳ ଆହାର ଚଉଳ ପ୍ରକୃତର ଶତ ଶତ ସୁକୁମାର ପୁତ୍ରକନ୍ୟାଙ୍କୁ ଗ୍ରହବାଟୀରେ ଧନଧନ ଏକତ୍ର କରି ଦୀର୍ଘକାଳ ସେମାନଙ୍କୁ ଆନନ୍ଦରେ ବସାଇ ନଜେ ସେଥିରେ ଭସିପାରୁଅଛ । ତୁମ୍ଭର ଏ ଅସାଧାରଣ କୋକନାଚୂତ୍ତ୍ୱକ ଦେଖି କାହାର ପ୍ରେମାଶ୍ରୁ ନ ବୁଏ ? ତୁମ୍ଭର ଏତାଦୃଶ ଦାନର ପ୍ରତିଦାନ ଆମ୍ଭମାନଙ୍କ ପକ୍ଷରେ ଏକାନ୍ତ ଦୁର୍ଲ୍ଲଭ । କେବଳ ଶୈଶବାବଧି ମନୋହର କୌତୂହଳ-ପୂର୍ଣ୍ଣ ଗଳ୍ପ, ଉପନ୍ୟାସ ଶୁଣିବାରେ ଏବଂ ଶୁଣାଇବାରେ ତୁମ୍ଭର ଅତ୍ୟନ୍ତ ଆଗ୍ରହ ଥିବାର ଦେଖି ତଦ୍ୱାରାହିଁ ତୁମ୍ଭର କଥିତ ପ୍ରୀତି ସମ୍ପାଦିତ ହୋଇପାରିବ, ଏହି ବିଶ୍ୱାସରେ ମୋତେ ଜଣାଥିବା ଗଳ୍ପମାନଙ୍କ ମଧ୍ୟରୁ କେତୋଟି ଗଳ୍ପରେ ନିର୍ମିତ ଏହି "କଥା-କୁସୁମ"ଟି ଅତି ସ୍ନେହରେ, ଆଦରରେ ତୁମ୍ଭର କରକମଳରେ ଅର୍ପଣ କରୁଅଛି । ଆଶା କରେ, ଆଗ୍ରହରେ ଗ୍ରହଣ କରି ଚରିତାର୍ଥ କରିବ । ଇତି ।

ତୁମ୍ଭର

ଶୁଭାକାଂକ୍ଷିଣୀ

ଶାଶୂ

# ସୂଚୀ





[illegible]



## ଆକାଶ ମିସ୍ତ୍ରୀ

ଜଳଦାପୁର ରାଜ୍ୟରେ ଗଣ୍ଡଗୋପାଳ ବୋଲି ଜଣେ ରଜା ଥିଲେ । ସେ ପିଲ୍ଟିଦିନୁଁ ପାଠ ସାଙ୍ଗେ ସଙ୍ଗାତ । ସଙ୍ଗାତର ତ ନାଁ ଧରନ୍ତି ନାହିଁ । ସେ ଆଜି କମିତ ପାଠ ନାଁ ଧରନ୍ତେ କି ? ତେଣୁ କରି ସେ ଗୋଟିଏ ଭୁଚ୍ଛା ଗଜ ମୂର୍ଖ । ରଜାଙ୍କ ନାଁଟି ଯିମିତ, ଗୁଣ ସବୁ ସିମିତ, ସିଥିକି ଯୋଗ୍ୟ ପାତ୍ରମନ୍ତ୍ରୀ ଗୁଡ଼ିଏ ମଧ୍ୟ ମିଳିଥାନ୍ତି । ଖାଇ ପଣା କଣା, ଶିକାରରେ ଦିନ ଯାଏ । ସବୁ ଗୁଣଠଉଁ ରଜାଙ୍କ ରାଗଗୁଣଟା ବଳକା । ଯେଉଁତବେଳେ ଯାହାକୁ ଯାହା ହୁକୁମ ହୋଇଗଲା, ସେ ତା ପାରୁ କି ନ ପାରୁ, ଯେବେ ନ କଲା, ତେବେ ତା ବଇଁଶପାଙ୍କ ମୋରିଆକୁ ଗଲେ । ଇମିତ ଅକଡ଼ବାଗୀ ରଜା ପାଖକୁ କିଏ କଅଁ ଯିବ ? ତାକୁ ଦେଖିଲେ ଲୋକଙ୍କ ପେଟଲେହୁ ପ୍ରାଣି ! ଖାଲି ସେଇ ପାଖଲୋକ କେତୃଟା ଶୁଅକୁ ବୁଅ, ବୁଅକୁ ଶୁଅ, ଯେତେବେଳେ ଯାହା ହୁକୁମ ହେଲା, ସେଇ କଥାକୁ ଅଜ୍ଞା ଅଜ୍ଞା କରି ମହା ମଉଜରେ ଥାନ୍ତି । ଭଲ ଭଲ ଲୋକେ ପାଖ ମାଡ଼ନ୍ତି ନାହିଁ ।

ସେ ରାଜ୍ୟରେ ଗୁରୁଚାନ୍ଦ ବୋଲି ଜଣେ ବଡ଼ ପଣ୍ଡିତ ଥିଲେ । ସେ ଛ ଶାସ୍ତ୍ର, ନଅ ବ୍ୟାକରଣରେ ପଣ୍ଡିତ । ହେଲେ କଣ ହେବ, ତାଙ୍କର ବାସୀ ଓଳିକି ଦାନା ନ ଥାଏ । ଦିନକୁ ଦିନ ପଣ୍ଡିତଙ୍କ ପିଲାପିଲି ଖାଇବା ବିନା କଷ୍ଟ ପାଉଥାନ୍ତି । ପଣ୍ଡିତେ ବା କଣ କରିବେ ? ହେଇ

ହେଉ ରଜା ପାଖକୁ ପାଠ ଶ୍ଳୋକ କରି ଗୁଣ ଘେନିବା ଆଣି ଘର ଚଳାନ୍ତେ । ରଜା ତ ମୂର୍ଖ ରଜା, ଛୁଞ୍ଚା ଗଜମୂର୍ଖ, ସେଥିରେ ପୁଣି ଅଖାଡ଼ୁଆ । ଇମିତି ରଜା ପାଖେ ଯାଇ ଲାଭ କିଛି ନାହିଁ, ଓଲଟି ଯେବେ କିଛି ବଙ୍କା ବୁଝେ, ତେବେ ସର୍ବନାଶ—ଏଣୁ। ବଗୁର ପଣ୍ଡିତେ ରଜା ପାଖକୁ ନ ଯାଇ ଶାଗ ପେଜ ଖାଇକରି ସୁରୁସୁଣ ସନ୍ତୁଷ୍ଟ ଥାନ୍ତି । ଇମିତି ଏବେ କେତେ ଦିନ ଚଳିବ ? ସେ ସିନା ପଣ୍ଡିତ ଲୋକ ବୋଲି ପାଠ ଶ୍ଳୋକରେ ଦିନ କଟାଉ ଥାନ୍ତି । ପଣ୍ଡିତଅଣୀ ସେ ଦୁଃଖ ଅଉ ସମ୍ଭାଳି ପାରିଲେ ନାହିଁ । ଦିନେ ପଣ୍ଡିତଙ୍କୁ କହିଲେ—"ହଇହେ ! ଏ ସୁ ଗୁଡ଼ାକ ପାଠ ଶାଠ ଜାଣନ୍ତି ନାହିଁ, ସେଗୁଡ଼ାକ ରଜା ପାଖକୁ ଯାଇ ଖାଇ ପିଇ ଘର ଦ୍ୱାର କରି ଅଠିଲି ହୋଇ ଚଳିଲେ, ତୁମେ ଶଗଡ଼ ଶଗଡ଼ ପୋଥି ପଢ଼ି ଏମିତ ହେଲି କଣ ? ଲୋକର ମୁଖ ଫିଟିଲେ ସିନା ଦୁଃଖ ଯାଏ, ତୁମେ ତ ସବୁବେଳେ ପୋଥିଟିଏ ଧରି ପିଣ୍ଡାରେ ବସି ରହିଲ, ଦିନେ ତ ରଜା ପାଖକୁ ନ ଗଲ, ଇଥେରେ ପିଲେ ଚଳିବେ କିମିତି ? ଏବେ ମୋ କଥା ମାନ, ରଜା ପାଖକୁ ଯାଅ ।"

ପଣ୍ଡିତେ ଟିକିଏ ତଳକୁ ଉପରକୁ ଚାହିଁଲେ; ପଛକୁ କହିଲେ—ସତ କଥା, ହଉ ରଜା ପାଖକୁ ଯାଏଁ । ସେ ଯେବେ ମୋ କପାଳକୁ ଭଲ ବୁଝିଲା ତେବେ ତ ଭଲ, ନ ବୁଝିଲେ ପିଲେ ଇମିତି ମରନ୍ତେ ନ ହେଲେ ସିମିତି ମରିବେ । ଏଣୁ ବଗୁର ପଣ୍ଡିତେ ରଜାଘରକୁ ଗଲେ । ପଣ୍ଡିତେ ସିଂହଦ୍ୱାର ଅଗପାଖ ହୋଇ ଦେଖନ୍ତି ତ—ରଜା ସିଂହ-ଦୂଆରେ ବିଜେ ହେଉଛନ୍ତି । ପାତ୍ର, ମନ୍ତ୍ରୀ, ପାଖଲୋକ ସବୁ ରଜାଙ୍କୁ ବେଢ଼ିଛନ୍ତି । ଏଣୁ ଛଡ଼ା ଗଡ଼ୁ ଅଖରୁ ଶବ୍ଦ ଶବ୍ଦ ହୋଇ ହେଉଛନ୍ତି । କଣ ନା, ମେଣ୍ଢା ଲଢ଼େଇରେ ଧୂଳି ଉଡ଼ୁଛି । ପଣ୍ଡିତେ ଏଣୁ ଦେଖି ମନେ ମନେ ଖୁସିଟେ ହୋଇ କହିଲେ—ଭଲ ବେଳରେ ତ ଅସିଛି, କପାଳକୁ କଣ ଫଳୁଛି ଦେଖାଯାଉ ।

କାନ୍ଦିଲେ [illegible] ରଜାଙ୍କ [illegible] ପଣ୍ଡିତଙ୍କ ଦେଖି ସୁଖି ହେଲେ । ଦେଖି [illegible] ଭାରି ଅନନ୍ଦ । ଏଇ ଅନନ୍ଦ ବେଳକୁ ପଣ୍ଡିତେ ଉମରରେ [illegible] ଅଖି ଡେଇଗଲେ । ରଜା କେତେ ତାକୁ ପଣ୍ଡିତଙ୍କୁ ଦେଖି ନ ଥିଲେ । ଯିମିତି ଶୁଙ୍ଘି ଦେଇଛନ୍ତି, ସିମିତି ସାଙ୍ଗେ ସାଙ୍ଗେ ପଣ୍ଡିତଙ୍କୁ ଚିହ୍ନି ପକାଇ ପଣ୍ଡିତେ ଡାକର ଶୁଣି କହିଲେ— କଣ, ମୋ ଦଶା ଫେରିଲା କି ? ହଉ, ଦେଖାଯାଉ । ପଣ୍ଡିତେ ସାମ୍ନାରେ ଛିଡ଼ା ହବାରେ ରଜା ପଚାରିଲେ—କଏ ପଣ୍ଡିତେ ! କିମିତି ଅଛ ? କିମିତି ଚଳୁଚ ?

ପଣ୍ଡିତେ କହିଲେ—ଅଜ୍ଞ ! ମୁଁ ତ ସେଇ କଥା ସାମ୍ନାରେ ଜଣାଇଥାନ୍ତି ମୋ ଭାଗ୍ୟକୁ ଛୁଟି ତ କାଳେ ପଚାରି ଥିଲା ହେଲେଣି । ଅଜ୍ଞ ! ଅଉ ଜଣେଇବି କଣ ? ବଡ଼ ଦୁଃଖରେ ଚଳୁଚି । ପିଲାପିଲି ବଡ଼ କଷ୍ଟ ପାଉଚନ୍ତି ।

ରଜା କହିଲେ—ଏମିତି ତ ? କିଛି ପରବାଏ ନାହିଁ । ଅମେ ଗୋଟେ କଥା କହିବୁ, ତୁମେ ତାହା କରିଦଅ, ଅମେ ତୁମକୁ ଇମିତି ଖୁସି କରିଦେବୁ ଯେ ତୁମେ ସାତ ପୁରୁଷ, ସତାବନ ପୁରୁଷ ଧରି ସୁଖରେ ଚଳିବ । ଏୟା ଶୁଣି ପଣ୍ଡିତଙ୍କ ମନ ଅନନ୍ଦରେ ଲୁଣ୍ଡେ ମୋଟ ହୋଇଗଲା । ସେ କହିଲେ—ଅଜ୍ଞ ! ସେ କି କଥା, ଅଜ୍ଞା କରନ୍ତୁ । ରଜା କହିଲେ— "କଥା ଏମିତି ବଡ଼ କଥା ନୁହେଁ; କଥା କଣ କି, ଅମେ ଅନେକ ଦିନ ହେଲା ଅକାଶରେ ଖଣ୍ଡେ ଘର କରିବାକୁ ଭାବିଲୁଣି, ଏପର୍ଯ୍ୟନ୍ତ ସେ ଜନ୍ତ୍ର ହୋଇ ପାରିଲା ନାହିଁ । ତୁମେ ପଣ୍ଡିତ ଲୋକ, କାମ ଧାମ ନାହିଁ, ଘରେ ବସି ରହିଚ, ଏଇ କାମଖଣ୍ଡ କରିଦଅ, ତୁମ ଦୁଃଖ କଥା ଅମେ ବୁଝିବା । ତୁମେ ଅଣ ମିସ୍ତ୍ରୀ ଠିକଣା କରି ଅମ ସାମ୍ନାରେ ଜଣାଇଲେ ଅମେ ଇଟା ଚୂନ ଲେଇବାକୁ ଯାହା ଦରକାର, ସେ ସବୁ ଯୋଗାଇ ଦେବୁ । ଅଉ ଗୋଟିଏ କଥା, ମନେ ରଖ—ଏ କାମଟି

ନେଇ ଅଣି ଦେ ... ନ ଜାଣିଲେ ତୁମ ବଂଶକୁ କୁକୁରଙ୍କୁ ଦେବୁ ।" ଏହି ଅସମ୍ଭବ କଥା ଶୁଣି ପଣ୍ଡିତେ କାଠ ପରି ହୋଇଗଲେ । ଏଥିରେ ପୁଣି ନ କରି ପାରିଲେ ବଂଶ ମରିବା କଥା ଶୁଣି ଅଧିକ ଥକା ହୋଇଗଲେ । ଆକାଶରେ କୋଠା ତିଆରି ହେବ, ଏହା କେବେ ଦେଖା ନ ଥିଲା କି ଶୁଣା ନ ଥିଲା । ଏ କଥା ବା ରଜାଙ୍କୁ କହୁଛି କିଏ ? କହିଲେ ତ ମୁଣ୍ଡ ରହିବ ନାହିଁ । ପଣ୍ଡିତେ ମନେ ମନେ ବଡ଼ ଛଳବଳ ହେଲେ, ପଞ୍ଜୁରି ଖର ନିଶ୍ୱାସଟିଏ ପକାଇ କହିଲେ—ଆଜ୍ଞା, ହଉ, ମୁଁ ଯାଉଛି, ଅଗ ମିସ୍ତ୍ରୀ ବୁଝେଁ । ଏହା କହି ପଣ୍ଡିତେ ଘରକୁ ବିଦା ହେଲେ ।

ପଣ୍ଡିତେ ଘରକୁ ଆସିଲେ ସିନା, ଖାଇବା, ପିଇବା, ଶୋଇବା, କାହିଁରେ ତାଙ୍କ ମନ ଲାଗିଲା ନାହିଁ । ସେ କାହାକୁ କିଛି ନ କହି ମସିଣା ଖଣ୍ଡିଏ ପକାଇ ମୁହଁ ମାଡ଼ି ଶୋଇଲେ । ବେଳ ତିନି ପହର ଚୌଦ ଘଡ଼ି ହେଲା, ପଣ୍ଡିତେ ଉଠିଲେ ନାହିଁ କି ଖାଇଲେ ନାହିଁ । ଯେ ଯେତେ ଡାକିଲେ ଶୁଣିଲେ ନାହିଁ, ଯେ ଯେତେ ପଚାରିଲେ ମନ-ଦୁଃଖର କାରଣ ମଧ୍ୟ କହିଲେ ନାହିଁ । କେତେବେଳ ଉତ୍ତାରୁ ତାଙ୍କ ଝିଅ ସୁଶୀଳା ପୋଥି ଶିଲଟ ଧରି ଗୃହାଳରୁ ଅସିଲା । ପଣ୍ଡିତଙ୍କର ଅଉ ପୁଅ ଝିଅ ନ ଥିଲା—ଝିଅ ବୋଲି ସେଇ ଗୋଟିକ । ସେ ବଡ଼ ବୁଦ୍ଧିଆ ପିଲା । ତାର ବୟସ ଅଠ ବରଷ । ପଣ୍ଡିତେ ତାକୁ ଭାରି ଭଲ ପାନ୍ତି । ସେ ଘରେ ଆସି ଶୁଣିଲା—ବାପା କାହିଁ କି ଖାଉ ନାହାନ୍ତି, ମନ-ଦୁଃଖରେ ମୁହଁ ମାଡ଼ି ଶୋଇଛନ୍ତି । ତହୁଁ ସେ ବାପାଙ୍କ ପାଖକୁ ଯାଇ ବହୁତ ରାଣ ନିୟମ ପକାଇ ଖାଇବାକୁ ଅଳି କଲା । ବାପା ଝିଅର ସ୍ନେହ ଛୁଟି ନ ପାରି କହିଲେ—ଅଲୋ ଝିଅ, ଖାଇବି କଣ ? ରଜା ତ ମୃ ବର ଦେଲେଣି, ସେଥିରେ ବଂଶ ଯାକ ମରିବା, ଅଉ ଖାଇବି କଣ ? ଏହା ଶୁଣି ଝିଅ କହିଲା—ବାପା ! ତୁମକୁ ମୋ ରାଣ, ରଜା କଣ କହିଲେ, କହ । ବାପା କହିଲେ—ଅଲୋ ଝିଅ ! ରଜାଙ୍କ ପାଇଁ

ଅକାଶରେ ମଁ ଗୋଟେ ଭଳି ... ଯୋଗଦେବ, ତା ନ କର ଆଗରେ ସେ ... ସମସ୍ତଙ୍କୁ ବୁଝାଉଅଛୁ ଦେଉଛ ।

ଏହା ଶୁଣି ଝିଅ କହିଲା—ବାପା ! ଏଥିଁ ତ ? ଏଥିପାଇଁ ଏତେ ମନଦୁଃଖ କାହିଁକି ? ଅକାଶରେ କୋଠା କରିଦବା କଥା ଯୋଉଠି ଲାଗିଲା, ତୁମେ ଅଗ ହାତ ଖାଅ ଝିଅଟା ପିଲାଟେ, ନ ହେବା କଥାରେ ସେ ଦମ୍ଭ ଦେଇ କହୁ ଦଉଛୁ, ଏଥିରେ ପଣ୍ଡିତଙ୍କର କପରି ବିଶ୍ୱାସ ହେବ ? ଖାଲି ତା ସଙ୍ଗ ଭୁହି ନ ପାରି ଯାହା ତାହା କରି ଗଣ୍ଡେ ଖାଇଲେ । ଝ... ସାରି ପଣ୍ଡିତେ ଝିଅକୁ ପଚାରିଲେ—ହଇଲେ ଝିଅ ! ଅକାଶରେ ପକାଠେ କିମିତ କରିବୁ ? ଅଗ ଏ କଥା ମତେ କହିଲୁ, ମୁଁ ଟିକଏ ଶୁଣେ । ଝିଅ କହିଲା—ବାପା ! ସେଥିକି ତୁମେ ଭାବନା କର ନାହିଁ, ମୁଁ ପଳା କଥା ବୁଝିବି ତୁମେ ଇଲେ ରଜା ପାଖକୁ ଯାଇ କହ— ଅଜ୍ଞ ! ଅକାଶ ମିର୍ଶ୍ରୀ ତ ପାଖ ଅଟରେ ମିଳିବେ ନାହିଁ । କାହିଁ କେତେ ସାଇଜ ଖୋଜିବାକୁ ହେବ, ଏଥିକି ଟଙ୍କା ହଜାରେ ବାଟ ଖର୍ଚ୍ଚି ନ ଧରିଲେ କିମିତ ବାହାରିବ ? ପଣ୍ଡିତେ ଝିଅ କଥା ମତେ ରଜା ପାଖକୁ ଗଲେ । ବାଟଖର୍ଚ୍ଚି କଥା ଜଣାଇବାରେ ସାଙ୍ଗେ ସାଙ୍ଗେ ହଜାରେ ଟଙ୍କା ମିଳିଗଲା । ପଣ୍ଡିତେ ଟଙ୍କା ଥଳିଟି ଧରି ଘରକୁ ଆସି ଝିଅ ହାତ ଦେଇ କହିଲେ—ଟଙ୍କା ତ ଅଣିଲ, ଏବେ କଣ କରୁଚୁ, କର । ଝିଅ କହିଲା —ବାପା ! ବୁଦ୍ଧିରେ ସବୁ କାମ ହେବ, ତୁମେ ଥିର ହୋଇ ଘରେ ବସ । ଅଗ ଏ ଟଙ୍କାରେ ଖାଇ ପିଇ ସୁଖରେ ଚଳିବା, ତା ପର ହେଲେ ଯୁ କଥା ହେବ, ମୁଁ ସେ କଥା କହିବ ।

ପଣ୍ଡିତେ ଝିଅର ଏ କଥା ଶୁଣି ମନେ ମନେ ବ୍ୟସ୍ତ ହେଲେ । ସେ ଭାବିଲେ—ପିଲା ବୋଲରେ ପଡ଼ି ରଜାଠରୁଁ ହଜାରେ ଟଙ୍କା ଯେନି ଅସିଲି, ସେ ଏବେ ଇମିତ କହୁଲଣି, କପାଳରେ ଭଲ ଥିଲାପରି ତ ଦିଶୁ ନାହିଁ । ଏବେ କରିବ କଣ ? ଯା ଭାବ ପୁଣି ଝିଅକୁ ପଚାରିଲେ—

ଅଲୋ ଝିଅ ! ତୋ' ଢଗକଥା ଜାଣିବୁ କିପରି ? ତୁ ମିଛ କହିବୁ. ତୋ କଥାରେ ଭୁଲି ଯାଇ ମୁଁ ଏତେ ଗୁଡ଼ାଏ କଥା କହି ପକାଇଲି, ଏ କଥା ଭାବିଲା ବେଳକୁ ମୋତେ ଶିରପୁର ଅଙ୍ଗ ଥରି ଯାଉଛି ତୁ କହ କଣ କରିବୁ କହିଲୁ ? ଝିଅ କହିଲା—ବାପା ! ତୁମେ ଥୟ ଧର, ମୁଁ ସବୁ କଥା ବୁଝାଇଦେବି, ରଜାଙ୍କୁ ବୋଧ କରିଦେବି । ପଣ୍ଡିତେ ଆଉ କଣ କରିବେ, ତୁନି ହୋଇ, କପାଳକୁ ଆଦରି ରହିଲେ । ରଜା ଘର ଠିକାରେ ଦାନା କେତେ ଖାଇ ପିଇ ସୁଖରେ ରହିଲେ । ଠିକା ଅସି ସରିଲା । ପଣ୍ଡିତେ ଝିଅକୁ କହିଲେ—କି ଲୋ ଝିଅ ! କାହିଁ, କିଛି ତ କଲୁ ନାହିଁ, ଏବେ କଣ ହବ ? ଝିଅ କହିଲା—ହଉ, ହଉ, ବାପା ! ଆଉ ବ୍ୟସ୍ତ ହୁଅ ନାହିଁ । ତୁମେ ଅଜି ହାଟରୁ ଯାଇ ଯୋଡ଼ାଏ ଚାଟିଆ ଶୁଆ ମୋତେ କିଣି ଆଣି ଦିଅ, ଏଣିକି ଆକାଶ କୋଠା କଥା ମତେ ଲାଗିଲା ।

ବାପା ହାଟରୁ ଯୋଡ଼ିଏ ଶୁଆ କିଣି ଆଣି ଦେଲେ । ଝିଅ ସେ ଶୁଆ ଯୋଡ଼ିକ ନିତିଦିନ ପଢ଼ାଇବାକୁ ଲାଗିଲା—ହୋ କୁଲି ! ଇଟା ଲଓ, ଚୂନ ଲଓ, ପାନି ଲଓ । ଶୁଆ ତ ଚାଟିଆ ଶୁଆ, ଅଳ୍ପ ଦିନେ ସେ ସବୁ କଥା ଶିଖିଗଲେ । ପଛକୁ ଶୁଆ ତାଙ୍କ ମନକୁ ଦିନରାତି ପଢ଼ିଲେ—ହୋ କୁଲି ! ଇଟା ଲଓ, ଚୂନ ଲଓ, ପାନି ଲଓ । ଝିଅ ଯହୁଁ ଦେଖିଲା ଶୁଆ ସବୁ ପଦ ଧରିଲେ, ତହୁଁ ଦିନେ ବାପାଙ୍କୁ କହିଲା—ବାପା ! ଆଜି ଯାଇ ରଜାଙ୍କୁ କହ—ଆକାଶ ମିସ୍ତ୍ରୀ ଆସିଗଲେ, କାଲିଠାରୁଁ କାମ ଲାଗିବ । ତୁମ୍ଭଙ୍କୁ ବେଣ୍ଟ ପୋଖରୀ ପାଖରେ କାଲି ବଡ଼ ସକାଳୁ କେବଳ-ବାକି ଇଟା ଚୂନ ଯୋଗାଇଦେଲେ କାମ ଆରମ୍ଭ ହୋଇଯିବ ।

ଝିଅ କଥା ଅନୁସାରେ ପଣ୍ଡିତେ ରଜାଙ୍କୁ ସବୁ ଜଣାଇଲେ । ଆକାଶ ମିସ୍ତ୍ରୀ ଆସିଛି, କାଲି ସକାଳେ ବେଣ୍ଟ ପୋଖରୀ ଆକାଶରେ କୋଠାକାମ ଆରମ୍ଭ ହେବ, ଏ କଥା ଚାରିଆଡ଼େ ଚହଟି ଗଲା । ସଜି

ପାଇଲା । ଏଲକୁ ରଜା ଥାନମନ୍ତ୍ରୀ ସୈନ୍ୟ ସାଗର ଯେବେ ଘୋଷାଘୋ ପାଖରେ ଥାଉଛ । ତା ଛଡ଼ା କାହିଁ କେତେ ଯେ ଲୋକ ମାଡ଼ି ଅସିଲେ, ତାର ଥାରବାର ନାହିଁ । ଯୋଗମ୍ଭ କୁଳକୁ ଲୋକେ ନ ଅସୁଣୁ ପଣ୍ଡିତେ ଏଥି ଉଥା ଅନୁସାରେ ପଞ୍ଜୁରି ଶୁଆ ଯୋଡ଼କ ଉପରକୁ ଛାଡ଼ି ଦେଇଥାନ୍ତି । ସେ ଶୁଆ ଦୁଇଟି ଉଡ଼ି ଉଡ଼ି ସବୁବେଳେ କହୁଥାନ୍ତି —ହୋ ଭୁଲ ! ଇଟା ଲାଗୁ, ଚୂନ ଲାଗୁ, ପାନ ଲାଗୁ । ରଜା, ମନ୍ତ୍ରୀ, ଲୋକବାକ ଯେ ଅସିଲେ, ସେ ଶୁଣିଲେ—ହୋ ଭୁଲ ! ଇଟା ଲାଗୁ, ଚୂନ ଲାଗୁ, ପାନ ଲାଗୁ । ଯେ ଶୁଣିଲା, ସେ କାବା ହେଲା । ରଜା ଏହା ଶୁଣି କହିଲେ—କାହିଁ ପଣ୍ଡିତେ ! କଣ ! କଣ କରିବା ? ପଣ୍ଡିତେ କହିଲେ—ଅଜ୍ଞା ! ଅକାଶ ମିସ୍ତ୍ରୀ ପରା । ଇଟା ଚୂନ ପାଣି ମାଗୁଛି ? ଅଉ ଗୁହାଁଲେ କଣ ହେବ ? ତାକୁ ବେଗେ ବେଗେ ଜିନିଷ-ପତ୍ର ଯୋଗାଇ ନ ଦେଲେ ସେ ରଗିକରି ଗୁଲିଯିବ । ସେ ଅଜ ଜାଣେ ରଜାର କାମ କରୁଥିଲା । ମୁଁ କେତେ କଷ୍ଟରେ ଅଣିଛି । ଏହି ମଧ୍ୟରେ ପୁଣି ଶୁଣାଗଲା—ହୋ ଭୁଲ ! ଇଟା ଲାଗୁ, ଚୂନ ଲାଗୁ, ପାନ ଲାଗୁ । ପଣ୍ଡିତେ ପୁଣି କହିଲେ—ମିସ୍ତ୍ରୀ ବହୁତ ବାର ମାଗିଲାଣି, ଫଳକୁ ସେ ରଗିକରି ପଳାଇବ ।

ରଜା ଏହା ଶୁଣି ଲୋକଙ୍କ ଉପରେ ରଗିକରି କହିଲେ—କି ରେ ବୋକା ଗୁଡ଼ାକ ! ଗୁହୁଁଛ କଣ ? ବେଗେ ବେଗେ ଇଟା ଚୂନ ପାଣି ଯୋଗାଇ ଦଉଛ ନାହିଁ ? ଲୋକେ କହିଲେ—ଅଜ୍ଞା ! ଅମେ ଅକାଶକୁ ସେମିତି କମିତି ନବୁ ? ରଜା ଟିକିଏ ଭାବିଲା ପରି ହୋଇ କହିଲେ— ହଁ ହେ ପଣ୍ଡିତେ ! ସେମିତି ଅକାଶକୁ କମିତି ଯିବ ? ପଣ୍ଡିତେ କହିଲେ—ଅଜ୍ଞା ! ସେ କଥା ମୁଁ ଜାଣିଛି ? ଆମୁ ତ କହିଲେ, ଲୋକବାକ ଜିନିଷ ପତ୍ର ସବୁ ଯୋଗାଇ ଦେବେ ବୋଲି । ଯାହା ଯେବେ ନ ହେବ, ତେବେ ବଡ଼ ଅଡ଼ୁଆ ହେବ । ଅକାଶ ମିସ୍ତ୍ରୀ ଯେବେ ରଗି

କର ଯାଇ ଅଜାଣ ରଜାକୁ ଏ କଥା ... ତେବେ ପରକୁ ଅମ ରାଜ୍ୟ ଖଣ୍ଡି ଯିବ ।

ରଜା ଏ କଥା ଶୁଣି ଡରିଯାଇ କହିଲେ—ହଇହେ ପଣ୍ଡିତେ ! ତେବେ କଣ କରିବା ? ପଣ୍ଡିତେ କହିଲେ—ଅଜ୍ଞ ! ଅଉ କଣ କରିବା ? ମନେ ତ ବୁଦ୍ଧିବାଟ କିଛି ଦିଶୁ ନାହିଁ । ରଜା କହିଲେ—ପଣ୍ଡିତେ ! ଅଉ ଚୁହିଁଲେ କଣ ହବ ? ଯିମିତି ତିମିତି ମିସ୍ତ୍ରୀଙ୍କ ବୋଧ ଶୋଧ କରି ଛଡ଼, ନଇଲେ ପରକୁ ରାଜ୍ୟ ଖଣ୍ଡି ଯିବ ସିନା ? ପଣ୍ଡିତେ କହିଲେ—ହଉ, ତେବେ ଦ'ହଜାର ଟଙ୍କା ଦିଅନ୍ତୁ । ମୁଁ ତାକୁ ସେତକ ଦେଇ କୁହା ସୋଝ କରେ । ସେତିକରେ ମଙ୍ଗିଗଲା ତ ଭଲ, ନଇଲେ ପରକୁ ଅଉ କିଛି ଯାଉବା । ରଜା ସାଙ୍ଗେ ସାଙ୍ଗେ ଦ'ହଜାର ଟଙ୍କା ପଣ୍ଡିତଙ୍କୁ ଦେଲେ । ରଜା ମନ୍ତ୍ରୀ ସୈନ୍ୟ ସାଗର ଯେ ଯୁଅଡ଼ୁ ଅସିଥିଲେ, ସେ ସବୁ ସିଅଡ଼କୁ ଗଲେ । ତାପରେ ପଣ୍ଡିତେ ଟଙ୍କା ଛଣିକ କାନ୍ଧରେ ବସାଇ ଦ'ଶୁଅଙ୍କୁ ଚୁଚୁକାର ମାରି ତାଙ୍କ ହାତରେ ବସାଇ ଖୁସିରେ ଗୋଟେ ଗୋଟେ ଘରକୁ ଗଲେ । ପଣ୍ଡିତେ ଘରେ ପହଞ୍ଚିଲା ଷଣି ସାଙ୍ଗେ ସାଙ୍ଗେ ଝିଅକୁ ଟଙ୍କା ଥଳିଟି ଦେଇ କହିଲେ—ଝିଅ ! ତୋ ବୁଦ୍ଧି ଧନ୍ୟ ! ଅଉ ତୋ ପେଟ ବଉଁଶଯାକ ବଞ୍ଚିଲେ ।

ଝିଅ ଯୋଗୁଁ ସେହି ଧନ ଠାରୁ ପଣ୍ଡିତଙ୍କ ଘର ଆନନ୍ଦରେ ଚଳିଲା । ତେଣେ ପଣ୍ଡିତଙ୍କ ଯୋଗେ ରାଜ୍ୟ ରକ୍ଷା ହେବାରେ ରଜା ମହା ଖୁସି ହୋଇ ପଣ୍ଡିତଙ୍କୁ ଡକାଇ ବହୁତ ପ୍ରଶଂସା କଲେ । ସେହି ଦିନଠାରୁ ମଧ୍ୟ ବହୁତ ଜମିବାଡ଼ି ଦେଇ ପଣ୍ଡିତଙ୍କୁ ସଭା ପଣ୍ଡିତ କରି ରଖାଇଲେ । ପଣ୍ଡିତଙ୍କ ବୁଦ୍ଧିରେ ରାଜ୍ୟ ଭଲ ଚଳିଲା, ରଜା ପ୍ରଜା ସମସ୍ତେ ସୁଖରେ ରହିଲେ ।



# ନେଉଳ ପଣ୍ଡା ଟେ ା

ନବ ଗ୍ରାମ ପାଟଣାରେ ବୁନ୍ଦୁ ବୁନ୍ଦୁ ମହାନ୍ତି ବୋଲି ଜଣେ ଲୋକ ଥିଲେ। ସବୁ କଥାରୁ ତାର ଡର, ସବୁ କଥାରେ ତାର ସନ୍ଦେହ। ତା ଗାଁ ମୁଣ୍ଡରେ ଗୋଟିଏ ପଡ଼ିଆ ଥାଏ। ସେ ପଡ଼ିଆରେ ଗଛ ବୁଦା, ଗାତ ଗୋହିରୀ କିଛି ନ ଥାଏ। ଗାଁ ଲୋକେ ସମସ୍ତେ ସେଠାରୁ ଝାଡ଼ା ଫେରି ଯାନ୍ତି। ବୁନ୍ଦୁ ବୁନ୍ଦୁ ମଧ ସବୁ ଦିନ ସିଠେଇଁ ଝାଡ଼ା ଫେରେ।

ଦିନେ କଣ ହେଲା ନା, ସେ ପଡ଼ିଆରେ ଆଉ କେହି ନାହାନ୍ତି, ବୁନ୍ଦୁ ବୁନ୍ଦୁ ଏକୁଟିଆ ଗୋଖରୀପାଣି କଢ଼ିଥାଏ। କାହିଁକି କଣ ହେଲା, ସେ ଝାଡ଼ା ଫେରୁ ଫେରୁ ପଛକୁ ଟିକିଏ ଚାହିଁ ଦେଖିଲା, ଗୋଟେ ନେଉଳ ଦୁଆଡ଼ୁ ତାର ଆଡ଼କୁ ଧାଇଁଛି। ଯା ଦେଖି ବୁନ୍ଦୁ ବୁନ୍ଦୁ ଆଗ ପଟକୁ ମୁହଁ ଫେରାଇ ଆଣିଲା। ପୁଣି କଣ ମନରେ ସନ୍ଦେହ ହେବାରୁ ପଛକୁ ଚାହିଁ ଦେଖେ ତ, ନେଉଳ ନାହିଁ। ଏଥିରେ ତା ମନରେ ବଡ଼ ଆଶଙ୍କା ହେଲା। ଭାବିଲା—ପଡ଼ିଆଟା ଯାକରେ ତ ଗଛଟିଏ କି ବୁଦାଟିଏ, ଗାତଟିଏ କି ଗୋହିରୀଟିଏ, କିଛି ଦିଶୁ ନାହିଁ; ନେଉଳଟା ତ ମୋର ଆଡ଼କୁ ଧାଇଁ ଥିଲା, ତେବେ ଗଲା କୁଆଡ଼େ? ପଛକୁ ଭାବି ଭାବି ଠିକଣା କଲା—କିଛି ନାହିଁ, ନେଉଳ ଆଉ ଯାଆନ୍ତା କୁଆଡ଼େ? ଆଉ ତ କୁଠେଇଁ ଆଶ୍ରା ଦିଶୁ ନାହିଁ, ସେ ନିଶ୍ଚେ ମୋ ମଳଦ୍ୱାର ବାଟେ ପେଟ ଭିତରକୁ ପଶି ଯାଇଛି। ବୁନ୍ଦୁ ବୁନ୍ଦୁ ଏ କଥା ଯେମିତି ବିଚାରିଛି, ସେମିତି ସାଙ୍ଗେ ସାଙ୍ଗେ ପେଟକୁ ଦବାଣ୍ଡିଛି। ଦବାଣ୍ଡିଲା କ୍ଷଣି ତା ହାତକୁ ପେଟରେ ଟିକି ପରି ନେଉଳଟା ଲମ୍ବ ହୋଇ ଥିଲା ଭଳି ଲାଗିଲା। ଯା ଯିମିତି ଲାଗିଲା, ସାଙ୍ଗେ ସାଙ୍ଗେ ତା ଛାତି ଭୟରେ ଧଡ଼ପଡ଼ ହେଲା। ତା ପରେ ସେ ଦିନଠୁଁ ସିଲାଗେ ଥରକୁ ଥର ପେଟକୁ ଦବାଣ୍ଡି ପକାଉଥାଏ, ଚିନ୍ତେ କରାଉ ଥାଏ। କେତେବେଳେ ହାତକୁ ନେଉଳର ଲାଞ୍ଜଟା ଲାଗୁଥାଏ,

ଠେକେଡେଙ୍ଗାଳେ ଅବା ମୁଣ୍ଡଠା ଅଳି ପ୍ରାନ୍ତରେ ଜଣା ଯାଉଥାଏ, ତୁଣ୍ଡି କେତେବେଳେ ନେଉଳଟା ପେଟ ଭିତରେ ବୁଲିଲା ପରି ଜଣା ଯାଉଥାଏ ।

ନିଦରେ କି କୁନୁ କୁନୁ ଅଜ୍ଞ ଥୟ ହୋଇ ବସିପାରେ ? ତାକୁ ଘୁରିଅଳ୍ପ ଅନ୍ଧାର ଦିଶିଗଲା । ହାତଗୋଡ଼ରୁ ଜୀଅ ଛାଡ଼ିଗଲା ପରି ଲାଗିଲା । ଏତେ ବଡ଼ ଜୀଅନ୍ତା ନେଉଳଟେ ପେଟରେ ବୁଲୁଛି ! ସେ ଆଉ ଥାଙ୍କା ଫେରିବ କଣ, ଅତର୍କରେ ଘରକୁ ଦୌଡ଼ି ଆସି ଝାଙ୍କି ଯାଇ ପଡ଼ିଗଲା । ଭୁଣ୍ଡରୁ କଥା ବାହାରୁ ନ ଥାଏ । ଘର ଲୋକେ ମା ଦେଖି ସମସ୍ତେ ବେଢ଼ିଗଲେ । 'କଣ ହୋଇଛି, କଣ ହୋଇଛି' ବୋଲି ସମସ୍ତେ ପଚାରିଲେ ।

କୁନୁ କୁନୁ କହିଲା—ଆଉ କଣ ହେବ ? ଅସ୍ୱର୍ଗୀ ହୋଇଗଲା । ଏଥିରେ ସମସ୍ତେ ଚମକି ପଡ଼ିଲେ । ପୁଣି ପଚାରିଲେ—କଣ ହେଲା, ବେଗେ ଫିଟେଇ କରି କହ । କୁନୁ କୁନୁ କହିଲା—କଣ କହିବି ? ଲୋକକୁ ପୁଣି ଇମିତି ଦଶା ପଡ଼େ ? ମୋ କପାଳ ହେ, କାହାକୁ କହିବି ? କିଏ କେତେ ସେ ପଡ଼ିଆରେ ଝାଡ଼ା ଫେରୁ ନାହାନ୍ତି ? କାହାରି ମଳଦ୍ୱାରରେ ନେଉଳ ପଶିଲା ନାହିଁ ? ମୋରି ମଳଦ୍ୱାରରେ ପଶିବାକୁ ଥିଲା ? ଧନ୍ୟ ରେ କପାଳ । କିନ୍ତୁ ଯେ କଥା କେହି ବୁଝି ପାରିଲେ ନାହିଁ ।

ବାପା ପଚାରିଲେ—କି ରେ କୁନୁ ! ବାୟାଙ୍କ ପରି କଣ ଗୁଡ଼େ କହୁଚୁ ? କୁନୁ କହିଲା—ବାପା ! ମୁଁ ବାୟା ? ନାହିଁ ହେ ବାପା ! ମୁଁ ବାୟା ନୁହେଁ, ନେଉଳ ମୋତେ ବାୟା କରି ଦେଉଛି । ପୁଣି ବାପା ପଚାରିଲେ—କି ରେ ! ନେଉଳ କଣ ? କୁନୁ କହିଲା—ବାପା ହେ ! ଝାଡ଼ା ଫେରି ବସିଥିଲି, ନେଉଳଟିଏ ପଛଆଡ଼ୁ ଆସୁଥିଲା, ସିଠେଇଁ ତ ଗଛବୁଦା, ଗାତଫାତ କିଛି ନାହିଁ । ସେ ଆଉ କୁଆଡ଼େ ବାଟ ନ ପାଇ ମୋ ମଳଦ୍ୱାରରେ ପଶିଗଲା । ଏବେ ସେଇଟା ମୋ ପେଟକୁ ଘାମ୍ପୁଡ଼ି

ଛଡ଼ାଇ ପକାଉଛି । ଆଉ ମୁଁ ଏଥିରୁ ବଞ୍ଚିଲା ପରି ଲାଗୁ ନାହିଁ । ଯେବେ ମୋତେ କିଛି କଣ ଜଣା ଅଛି, ତେବେ ଶୀଘ୍ର କର । ନ ହେଲେ ମୋ ଆଶା ଛାଡ଼ ।

ଝୁଆ କହୁ କହୁ ପେଟକୁ ଦବାଣ୍ଡି ଦେଇ କହୁଥାଏ—ଓହୋ ! କେଡ଼େ ବଡ଼ ଜନ୍ତୁ ହୋଇଛି ? ମୋ ପେଟରେ ରହିଲେ ମଣିଷ ଆଉ ବଞ୍ଚିବ ? ଓହୋ ହୋ, କି ଗର୍ଜି ପଡୁଛି ! ଝୁଆ ଦେଖି ବାଉଁଶ ଯାକ ହାଲା । ବାପା କହିଲେ—କିରେ ଝୁଣ୍ଟୁ ! ଏ କି ଅସମ୍ଭବ କଥା କହୁଚୁ ! ହଇରେ, ନେଉଳ ତୁଠେଇଁ କାହିଁ ମଳଦ୍ୱାରେ ପଶିଲାଣି ? ଲୋକେ ଶୁଣିଲେ ହସିବେ, ଆଉ ଇମିତି କଥା କହ ନା । ଝୁଣ୍ଟୁ କହିଲା— ବାଃ, ମୋ ବେଦନା ତ କି ସୁନ୍ଦର ବୁଝିଲ ? ହଁ, କିଆଁ ନ ହେବ ? ଯୁ ଦଶାକୁ ନେଉଳ ମୋ ପ୍ରାଣ ନଉଛି, ସେଇ ଦଶାକୁ ଲୋକେ ନ ହସିବେ କିଆଁ ? ହଇହେ ! ମୁଁ କଣ ପିଲା ହୋଇଚି କି ଅଳ କରିବି ? ଏତେ କଥା କିଆଁ ? ତୁମେ ସବୁ ମୋ ପେଟରେ ହାତ ବୁଲାଇ ଦେଖୁ ନାହଁ ? ସେଇଟା ତ ଏଡ଼ୁଟେ ହୋଇଛି, ମୋ ପେଟରେ ବୁଲୁଚି, ହାତ ପକେଇଲେ ଜାଣି ପାରିବ । ଆଉ ମତେ ପଗୁରିବା ଦରକାର ନାହିଁ । ଏବେ ଯାହା କରିବାର କର, ନ ହେଲେ ବେଳ ବେଳ ମତେ ଅଥୟ କଲାଣି । ଓହୋ', ମୋ ପେଟ କଣ ହୋଇ ଯାଉଚି ରେ ମୋ ବାପା ! ଅହୋ ପ୍ରଭୁ ! ମତେ ଇଥିରୁ କିମିତି ରକ୍ଷା କର । ଝୁଂଥୁ ଇମିତି କେତେ ଚଞ୍ଚଳ ହେଉଥାଏ । ବାପା ଜଇ ଯେ ଯେତେ ବୁଝାଇଲେ ବୁଝିଲା ନାହିଁ । ଘରଲୋକେ ଦେଖିଲେ ଯେ ଯା ମନରେ ଯୁ ବିଶ୍ୱାସ ହୋଇଛି, ତାହା କଥାରେ ଯିବ ନାହିଁ । ଏଥି ପାଇଁ ବୈଦ ଗୁଣିଆ ଦରକାର ।

ପଡ଼ଶା ଗାଁରେ ଜଣେ ଭଲ ବୈଦ ଥିଲେ । ତାଙ୍କ ପାଖକୁ ଲୋକ ଯାଇ ଡାକି ଆଣିଲେ । ବୈଦ ଯେ ରୋଗ କଥା ଆଗରୁ କିଛି

କାଣି ନ ଥିଲେ । ସେ ଜିନିଷ ପଦାକୁ ତାଙ୍କୁ ସାଙ୍ଗେ ସାଙ୍ଗେ କୁଂଥୁ-କୁଂଥୁ ପାଖକୁ ନେଇଗଲେ । ସେତେବେଳକୁ କୁଂଥୁକୁଂଥୁ ପେଟକୁ ଚିପିଚିପି 'ମା ଲୋ ବୋପା ଲୋ' ହୋଇ ଡାକୁଥାଏ, ଖାଲି ଏଣେ ତେଣେ ଗୋଡ ପକାଇ ଘରଦୁଆର ହେଉଥାଏ । ବାନ୍ତି ହେଉଛି, ଅରୁଚି ହେଉଛି, ଅଡ଼ାର ହେଉଛି କହୁଥାଏ । ବୈଦ୍ୟ ପହଞ୍ଚି ପଚାରିଲେ—କିଏ ମହାନ୍ତିଏ ! କଣ ହୋଇଛି ? ଥୟ ହୋଇ ବସ । ବୁଝିବା କଣ ହୋଇଛି !

କୁଂଥୁ କହିଲା—ଆଜ୍ଞେ ବୈଦ୍ୟେ ! ମୁଁ ମଲେ ଥୟ କରେଇ ଦେଉଛ ? ନଇଲେ ମୁଁ ବଞ୍ଚନ୍ତି ନାହିଁ ? ବୈଦ୍ୟ କହିଲେ—ହଉ ଦେଖିବା, ଅଧୀର ହୁଅ ନାହିଁ, ରୋଗ କଣ ହୋଇଛି କହିଲ ? କୁଂଥୁ କହିଲା—ଆଜ୍ଞେ, ରୋଗ ବ୍ୟାଧି କିଛି ନାହିଁ ହେ, ମୋ କପାଳକୁ ନେଉଳଟେ ପେଟଭିତରେ ପଶିଯାଇ ମୋ ଅନ୍ତ ଗୁଡ଼ିକ ଦଉଛି । ସବୁବେଳେ ତ ମୋ ପେଟକୁ ଚକାଚକି ହୋଇଲା ପରି ହୋଇ ପକାଉଛି । ମୁଁ କଣ କଥା କହି ପାରୁଛି ?

ବୈଦ୍ୟ ଏହା ଶୁଣି ହାବା ହୋଇ ପଚାରିଲେ—କିଏ ! ନେଉଳ କଣ ପଶିଲା ହେ ! ବାତୁଳଙ୍କ ପରି ଏପରି କଣ ଗୁଡ଼ାଏ କହୁଛ ? କଣ ସନ୍ନିପାତ ହୋଇଛି କିଏ ? ଅଚ୍ଛା, ସେ ନେଉଳ କଥା ପଛେ ବୁଝିବା, ଆଗ ରୋଗ କଣ ହୋଇଛି କହିଲ ? କୁଂଥୁକୁଂଥୁ କହିଲା—ମୁଁ ପରା କହିଲିଣି, ମୋର ଆଉ ରୋଗ କିଛି ନାହିଁ, ରୋଗ ସେଇ ନେଉଳ । ବୈଦ୍ୟ କହିଲେ—ଅଚ୍ଛା, ନେଉଳ କଣ କହିଲ ? କୁଂଥୁକୁଂଥୁ ତହୁଁ ନେଉଳ କଥା ସବୁ କହିଗଲା । ବୈଦ୍ୟ ଶୁଣି ହସିଲେ, କହିଲେ—ଆଜ୍ଞେ ! ମହାନ୍ତିଏ ! ଏ ବଡ଼ ଅସମ୍ଭବ କଥା, ପିଲାଏ ଶୁଣିଲେ ହସିବେ । ନେଉଳ କୁଠେଇଁ କାହା ମଳଦ୍ୱାରେ ପଶିଲାଣି ? ମୁଁ ଭାବୁଛି—ତୁମର ବାୟୁ ଦୋଷ ଘଟିଛି, ସେଇଥି ଯୋଗୁଁ ଇମିତି ଗୁଡ଼ାଏ କହୁଛ । କୁଂଥୁକୁଂଥୁ ଏହା ଶୁଣି ବୈଦ୍ୟ ଉପରେ ମହାରାଗ ହୋଇ କହିଲା—ତୁମ ବୈଦ୍ୟଗିରିଆ ଜଣା ଗଲାଣି । ତୁମେ ବୈଦ୍ୟ ନୁହ, ଯମ । ବୈଦ୍ୟ ହୋଇଥିଲେ ଇମିତି

କଥା କହନ୍ତି ? ତୁମେ ମୋ କଥା କାହିଁକି ଉଡ଼ାଇ ଦେଉଚ କାହିଁକି ? ଟିକିଏ ମୋ ପେଟରେ ହାତ ପକାଇ ଦେଖୁ ନାହିଁ ? ମୋ ତ କିଛି ନେଉଳଟିଏ ନୁହେଁ, ମସ୍ତ ବଡ଼ ନେଉଳ, ହାତ ପକାଇଲେ ତ ହଡ଼ା ଯାକ ହାତକୁ ଲାଗିବ । ସେଥିରୁ ମୋ ମିଛସତ ବୁଝି ପାରିବ ।

ବୈଦ ଏସବୁ ଶୁଣି ତୁନି ହେଲେ । ସେ କଥାରେ କିଛି ବାଦ କଲେ ନାହିଁ । ଦେଖିଲେ ଯେ ଯାହାର ମନରେ ଗୋଟେ ଲୟ ଧରିଛି, ମନ ବଦଳିଲେ ସିନା ଯାହାର ଏ ରୋଗ ଯିବ । ତା ଛଡ଼ା ଏଥିକି ଉପାୟ କଣ ? ତାପରେ ବୈଦ କହିଲେ—ନାହିଁ ବାପା ! ଏ ରୋଗକୁ ମୋଠେଇଁ ଔଷଧ ନାହିଁ । ଯାହା କହି ବୈଦ ବିଦା ହେଲେ । ବୈଦ ଅସିଲା ବେଳେ କୁନ୍ଥୁକୁନ୍ଥୁ ଭାବୁଥିଲା—ଯେତେ ଭଲ ବୈଦ, ନିଶ୍ଚେ କିଛି କରି ଔଷଧ ଦେବେ । ସେ ଯହିଁ କିଛି ନ କରି ଫେରିଗଲେ, ତହିଁ ତାର ବେଦନା ବଢ଼ିଗଲା । ଅଉରି ଅଧିକ ସେ ବିକଳ ହେଲା । ବାପାଙ୍କୁ ଡାକି କହିଲା —ବାପା ! ତୁମେ କଣ ସବୁ ଶୁଣୁଥିବ, ମୁଁ ମରିଯିବି, ନା ଅଉ କେଉଁ ଗୁଣିଆ ବୈଦ ଡାକିବ ? ବାପା ପୁଅର ବିକଳ ସହି ନ ପାରି କେତେ କେତେ ଗୁଣିଆ ବୈଦ ଡାକିଲେ । ଯେ ଏ ନେଉଳ ପଶା ରୋଗ କଥା ଶୁଣିଲା, ସେ କାନରେ ହାତ ଦେଲା । ପଛକୁ କେହି କେହି ପାନେ ପାନେ ଭେଦ ଔଷଧ ଚଢ଼େଇଲେ । ସେଥିରେ ଖାଲି ଝାଡ଼ା ପୁଡ଼େ ହୁଏ, ପେଟ ଗରମ ହୋଇ ଅଧିକ ଅରୁଚି ବଢ଼େ । ନେଉଳ ପଶା କଥା ମନରୁ ଟିକିଏ ହେଲେ ଯାଏ ନାହିଁ । ଏଥିରେ କୁନ୍ଥୁକୁନ୍ଥୁ ନ ଖାଇ ନ ପିଇ କଳାକାଠ ପରି ଦିଶିଲାଣି, ଦେହ କୁଠା ଖିଅ ପରି ସରୁ ହେଲାଣି । ଯେ ଯେତେ ବୁଝାଇଲେ କୁନ୍ଥୁକୁନ୍ଥୁ ନ ଖାଏ, ନ ପିଏ, ନ ଶୁଏ ।

ବଂଶଠା ଯାକ ତାଲାଗି ଘୋରି ଚିହରି ହୋଇ ନାଟସାର ହେଲେଣି । କୁନ୍ଥୁକୁନ୍ଥୁର ନାକଦଣ୍ଡିରେ ଅସି ପ୍ରାଣ ରହିଲାଣି । ଅଖପାଖ ଧରି

ଯେତେ ଗୁଣିଆ ବୈଦ୍ୟ ଥିଲେ, ସମସ୍ତେ ଦେଖି ଗଲେଣି । କାହାର ଜଡ଼ି, ମନ୍ତ୍ର, ଔଷଧ ଧରିଲା ନାହିଁ । ଯେମା[illegible] ଦେଖିଲେ ସେ ଯେ ଏହାପରି ରୋଗ, ଭଲ ହେବାର ପରି ଦିଶୁ ନ[illegible] । ଖାଲି ତା ମନ ବୁଝିବାକୁ ଏଣୁ ତେଣୁ ଜଣେ ଜଣେ ଚିକାର ଅନ୍ଦୁ ଥାଆନ୍ତି । ସେ ଯାହା କହିବାକୁ କହନ୍ତି, ତାହା କରୁଆନ୍ତି । ସିଏ ବା କଣ କରିବ ? ରୋଗ ହେଲେ ସିନା ଔଷଧ କରନ୍ତେ, ଏମିତି ଅସମ୍ଭବ କଥାକୁ ଉପାୟ କଣ ଅଛି ? କୁନ୍ଥୁକୁନ୍ଥୁର ଏ ରୋଗ କଥା ଗାଆଁଯାକର ଲୋକେ ଜାଣିଲେ । ଯେ ଶୁଣିଲା, ସେ ହସିଲା, ପଛକୁ ଲୋକେ କାହାରି କିଛି ରୋଗ ବ୍ୟାଧି ହେଲେ 'ତୋର ନେଉଳ ପଣା ରୋଗ ହୋଇଛି କି' ବୋଲି ଠଟ୍ଟା ଥାପର କଲେ ।

କୁନ୍ଥୁକୁନ୍ଥୁ ଦିନୁଁ ଦିନ ଶୁଖି ଶୁଖି ଦୁର୍ବଳ ହେଲା । ପଛକୁ ନାକ-ଦଣ୍ଡିରେ ପ୍ରାଣ ରହିଲା ! କୁନ୍ଥୁକୁନ୍ଥୁ ଏଥିରୁ ଉଧୁରିବ ବୋଲି ଆଶା ହେଲା ନାହିଁ ।

ନର୍ବଧୁଅପାଟଣାର ତିନି କୋଶ ଦୂରରେ ପଣ୍ଡିତପୁର ବୋଲି ଗୋଟିଏ ବ୍ରାହ୍ମଣ ଶାସନ ଥିଲା । ସିଠେଇଁ ତର୍କଚୂଡ଼ାମଣି ବୋଲି ଜଣେ ପଣ୍ଡିତ ଥିଲେ । ସେ ବଡ଼ ଚତୁର ଲୋକ । ସେ ଶୁଣିଲେ, ଇମିତି ଇମିତି ରୋଗରେ କୁନ୍ଥୁକୁନ୍ଥୁ ମରିବାକୁ ବସିଲାଣି । ରୋଗ ନାହିଁ, ବ୍ୟାଧି ନାହିଁ, ଲୋକଟା ଭୁଷ୍କାଟାରେ ମରିବାକୁ ବସିଲାଣି; ଠିକ ଏ ଲାଗିବା, ଯେବେ ଅଯୁଷ ଥିବ, ତେବେ ଠାକୁ ଗଲେ ଠାବ ଯିବ । ଯୁ ବସ୍ତର ପଣ୍ଡିତେ ଦିନେ ସନ୍ଧ୍ୟାବେଳେ ନର୍ବଧୁଅପାଟଣା ବାହାରିଲେ । ପଣ୍ଡିତେ ନାଆଁଆ ପଣ୍ଡିତ । ସମସ୍ତେ ଜାଣନ୍ତି, ଶୁଣନ୍ତି । ସେଠାରେ ଯହୁଁ ପହଞ୍ଚିଲେ, ଲୋକେ ଭାରି ମାନ୍ୟ କଲେ । ପଣ୍ଡିତେ କୁନ୍ଥୁକୁନ୍ଥୁ ଘରକୁ ଯାଇ ତା ସାଙ୍ଗେ ଦେଖା କଲେ । ପଣ୍ଡିତେ ଯାହା ଶୁଣିଥିଲେ, କୁନ୍ଥୁକୁନ୍ଥୁକୁ ସେଇଆ ଦେଖିଲେ । ପଣ୍ଡିତେ ପଚାରିଲେ—କିଓ ମହାନ୍ତିଏ ! ତୁମର କଣ ହୋଇଛି ହେ ? ପଣ୍ଡିତେ ଇତକ ପଚାରିବାରେ କୁନ୍ଥୁକୁନ୍ଥୁ

ଯିମିତ ଖାଡ଼ା ଫେରଗଲ୍ଲ, ଯେମିତ ନେତ୍ରଲ ଦେଖିଲ୍ଲ, ତାପରେ ନେତ୍ରଲ ଦେଖାଇ ପଳାଡୁଅଛ ପଶିବାର ... କଲ୍ଲ, ଏଥିକୁ କହ ... ମୁହେଁଇ ... । ପଣ୍ଡିତେ ତ ବୁଝିପାର୍ । ସେ ଦେଖିଲେ ଯେ ... ଥା ସବୁ ଉଠେଇ ଦେଲେ, ମୋ ... କାହୁଁ ହରିବ ନାହିଁ ସବୁ କଥା ତ ମାନଗଲେ ମୋ ଜୀବନ କାହୁଁ କରିବ । ଯା ... ସବୁ କଥା ମନ ଦେଇ ଶୁଣିଲେ । ଅଉ ଠାଏ ଠାଏ ତା କଥାରେ ତା ପାଇଁ ଧାଣ୍ଡି ଚକଟି ହେବାର ଦେଖେଇ ଦେଲେ । ସବୁ କଥା ଶୁଣି ସାରୁ ପଣ୍ଡିତେ କହିଲେ—ଏୟା ତ ? ଯେ ତ ନୂଆ କଥା ନୁହ ? ଇମିତ ତ କେତେକେତେ ... ନରେ ମଳଦୁଅରେ ନେତ୍ରଲ ପଶିବା କଥା ଶୁଣା ଅଛ । ଶୁଣା ଅଛ କାହିଁକି, ମୁଇଁ ତ ଏବେ ମୋ ଜୀବନରେ ଗୃହପାଖି ଜାଗାରେ ଇମିତ ରୋଗୀ ଭଲ କରଚ । ତୁମେ ଏତେ ଭୟ କରୁଚ କାହିଁକି ? ହିଁ, ଦଶା କଥେ, ଯେତେ ଦିନ ଧାଣ୍ଡିବାକୁ ଥିଲା, ସେତେ ଦିନ ଧାଣ୍ଡିଲ । ମୁଁ ତ ଜାଣୁଚ—ଏବେ ଦଶା ଫେରିଲା । ମୁଁ ବୈଦ ନୁହେଁ ସତ, ପ୍ରଭୁ ଲୋକନାଥଙ୍କ ଦୟାରୁ ମୁଁ ଗୋଟିଏ ଔଷଦ ଜାଣେ । ସିଥିରେ କେତେ କେତେ ଲୋକ ଭଲ ହୋଇଛନ୍ତି ! ତୁମେ ନିଶ୍ଚେ ଭଲ ହୋଇଯିବ । ସବୁ-ବେଳେ ସେଇ ଲୋକନାଥଙ୍କ ଠାଇଁ ଲୟ ରଖିଲେ ହେଲା ।

ପଣ୍ଡିତଙ୍କର ଏ କଥାରେ ବୁଜୁବୁଜୁକୁ ଜୀବନ ପାଇଲ୍ଲ ପର ଲାଗିଲା । ସେ ସାଷ୍ଟେ ସାଷ୍ଟେ ଲମ୍ବ ହୋଇ ପଣ୍ଡିତଙ୍କ ଗୋଡ଼ତଳେ ପଡ଼ି-ଗଲ୍ଲ । କହିଲା—ଅପଣ ଅଜଠଉଁ ଧର୍ମରେ ମୋର ବାପ ହେଲେ । ଅପଣ ସାକ୍ଷାତ୍ ଲୋକନାଥ । ଅଜିପର୍ଯ୍ୟନ୍ତ ଇମିତ ପଦେ ଦରଦ ଛଡ଼ା କଥା ... କେହି କହି ନ ଥିଲା । ଯୁ ଗୁଡ଼ାକ ଅଇଲେ, ସେ ଗୁଡ଼ାକ ସବୁ ଚୁଟା ମୂର୍ଖ । ଏବେ ଆପଣ ମତେ ଔଷଦ ଦିଅନ୍ତୁ ।

ପଣ୍ଡିତେ କହିଲେ—ବୁଝିଲ, ମହାନ୍ତଏ ! ଔଷଦ ଦେବ ଯେ, ଇଲବୁଲ ଔଷଦ କାହିଁ ? ମୁଁ ତିଅର କଲେ ସିନା ଦେବ ? ତିଅରିକୁ

ଗୃହ ପାଖ ଧନ ନେଇବ । ତାପରେ ତୁମେ ହଜାରେ ଔଷଧ ଖାଅ, ଲୋକନାଥଙ୍କ ପାଖି ଲାଗି ନ ରଖି ନିୟମରେ ଔଷଧ ନ ଖାଇଲେ କିଛି ଫଳ ହେବ ନାହିଁ । ଏହି ହେଲା ଗୁରୁଙ୍କ ଠାରେ ବିଶ୍ୱାସ । ମୁଁ ଗୃହ ଧନ ପରେ ପାଣେ ଔଷଧ ଦେବି, ସେଥିକରେ କ୍ଷମା ହୋଇଯିବ ।

କୁନ୍ଥୁକୁନ୍ଥୁ କହିଲି—ଆପଣ ଯେ ନିୟମ କହିବେ, ମୁଁ ସେଥିରେ ବରାବର ଚଳିବି । ଆପଣଙ୍କୁ ଗୃହଙ୍କ ପରି ଗୃହୁଁ ରହିଲି । କୁଂଥୁକୁଂଥୁ ଦଣ୍ଡବତ କଲା । ପଣ୍ଡିତେ ବିଦା ହୋଇ ଗଲେ ।

ପଣ୍ଡିତେ ଘରେ ପହଞ୍ଚି ଗୋଟେ ନେଉଳ ମାରି ଅଣିବାକୁ ଆପଣା ହଳିଅକୁ କହିଲେ । ହଳିଅ ନେଉଳଟାଏ ଅଣି ପଣ୍ଡିତଙ୍କୁ ଦେଲା । ପଣ୍ଡିତେ ତାହାକୁ କାହାକୁ ନ କହି ଗୋଟେ ଥାନରେ ତାକୁ ଲୁଚାଇ କରି ରଖିଲେ । ଗୃହ ଧନ ପରେ ସେଉଁଠା ପଡ଼ି ପୋତେ ଗନ୍ଧାଇବାରେ ତା ଅର ଦିନ ପଣ୍ଡିତେ ସେ ପୋତିଅ ନେଉଳଟା ଲୁଚାଇ କରି ନେଇ କୁଂଥୁକୁଂଥୁ ଗାଁକୁ ବାହାରିଲେ । ସେଉଁଠାରୁ ଗାଁ ମୁଣ୍ଡରେ ପାଏ ଲୁଚାଇ ରଖି କୁଂଥୁକୁଂଥୁ ସାଙ୍ଗେ ଦେଖା ହେଲେ । କୁଂଥୁକୁଂଥୁ ପଣ୍ଡିତଙ୍କୁ ଦେଖି ପ୍ରାଣ ପାଇଲା । ପଣ୍ଡିତେ ପାଣେ ସୁନାମକେଇ ଔଷଧ ସାଙ୍ଗରେ ନେଇଥିଲେ । ସେତକ ତାକୁ ଦେଇ କହିଲେ, ବୁଝିଲ ମହାନ୍ତିଏ ! ଏ ଲୋକନାଥଙ୍କ ହୁକୁମ ଔଷଧ । ଯାକୁ ପୂର୍ବକୁ ମୁହିଁ କରି ଲୋକନାଥଙ୍କୁ ମନେ ମନେ ସ୍ମରଣ କରି ଖାଇବ । ପେଟ ଭଲ ହୋଇଗଲେ ଦିଅଙ୍କୁ ଟୋପିଏ ଅମୃତ କୁଣ୍ଡ ଲାଗି କରିବ । ଆଉ ଗୋଟେ କଥା—ତୁମର ଏଥିରେ ଗୋଟେ ଦିଇଟା ଝାଡ଼ା ହୋଇଯିବ । ତୁମେ ମନେ ରଖିବ—ଯିମିତି ଝାଡ଼ା ହେଉଛି ପରେ ସେ ମଇଳାକୁ ନ ଗୃହିଁବ । ସେଥିରେ ଆଖି ପଡ଼ିଗଲେ ଅଉ ହୁକୁମ କାଠ୍ କରିବ ନାହିଁ ।

କୁଂଥୁକୁଂଥୁ କହିଲି—ମୋର ପ୍ରାଣ ଯାଉଛି, ଆପଣ ମୋତେ ମନା କରୁଛନ୍ତି, ମୁଁ ମଳକୁ ଗୃହିଁବ ? ଆଖିରେ ଲୁଗାଟାଏ ବାନ୍ଧି ଦେବି ପଛକେ, କେବେ ମଳକୁ ଚାହିଁବ ନାହିଁ ।

ପଣ୍ଡିତ କହିଲେ—ତେବେ ତ ହେଲ, ଅଉ ଚିନ୍ତା କର ନାହିଁ ଏଇତକରେ ସବୁ ଝଡା ହୋଇ ଯିବ । ହଉ, ଏବେ ନିଅ, ଏହାକୁ ବେଗେ ଖାଅ । କୁଂଥୁକୁଂଥୁ ସେ ପାନକ ଖାଇ ଗରମ ପାଣି ଟିକିଏ ପିଇଲା । ପଣ୍ଡିତେ ତା ପାଖରୁ ଯାଇ ଗାଁ ଭିତରେ ଠାଏ ଲୁଚି କରି ରହିଲେ । [illegible] ପହରକ ଠେଇଁ କୁଂଥୁକୁଂଥୁକୁ ଝାଡ଼ା ମଡ଼େଇଲା । ସେ ତରତର ହୋଇ ଦୌଡ଼ିକରି ଯାଇ ଠାଏ ଝାଡ଼ା ଫେରିଲା । ପଣ୍ଡିତେ କାହାକୁ କିଛି ନ କହି ତା ଝାଡ଼ା ଫେରା ଜାଗା ଦେଖି ଆସିଲେ । କୁଂଥୁକୁଂଥୁ ମଧ୍ୟ ପଣ୍ଡିତଙ୍କ କଥା ଅନୁସାରେ ଜମା ଝାଡ଼ାକୁ ଚାହିଁ ନାହିଁ । ଭେଦ ଯୋଗୁଁ ଗୁଡ଼ାଏ ପାଣି ପାଣି ଝାଡ଼ା ହୋଇଗଲା । କୁଂଥୁକୁଂଥୁ ପାଣି ସାରି ଘରକୁ ଫେରିଲା ପରେ ପଣ୍ଡିତେ ସେ ସଢ଼ା ନେଉଳଟାକୁ ନେଇ ସେହି ମଳରେ ଗୋଳେଇ ପୋଳେଇ ଦେଇ ଆସିଲେ । ତା ପରେ କୁଂଥୁକୁଂଥୁ ପାଖକୁ ଯାଇ କହିଲେ—ମହାନ୍ତେ ! କଣ ଝାଡ଼ା ଯାଇଥିଲ ? କୁଂଥୁକୁଂଥୁ କହିଲା—ହଁ, ଗୁଡ଼ାଏ ଝାଡ଼ା ହୋଇଗଲା । ପୁଣି ପଣ୍ଡିତେ ପଚାରିଲେ—ଆଛା, ଯୁଠେଇଁ ଝାଡ଼ା ଫେରିଛ, ସେ ଜାଗା ଦେଖାଇ ଦେଇ ପାରିବ ? କୁଂଥୁକୁଂଥୁ ହଁ ଭରିବାରୁ ପଣ୍ଡିତେ ତା ସାଙ୍ଗରେ ଅଳ୍ପଅଟେ ଧରି ଗଲେ ।

ଦିହେଁ ଯାକ ମଳ ପାଖରେ ପହଞ୍ଚିଲେ । ପଣ୍ଡିତେ ନ ଜାଣିଲା ପରି ହୋଇ ମଳକୁ ଏ ପାଖ ସେ ପାଖ ଚାହିଁ କହିଲେ—ମହାନ୍ତେ ! ଦେଖିବଟି ମଳ ଭିତରେ ଲମ୍ବ ହୋଇ ଗୋଟେ କଣ ଦିଶୁଛି ? କୁନ୍ଥୁକୁଂଥୁ ସାଙ୍ଗେ ସାଙ୍ଗେ କାଠି ଖଣ୍ଡିକରେ ମଳକୁ ଓଲଟ ପାଲଟ କରିବାରେ ଲାଞ୍ଜ ମୁଣ୍ଡ ଥାଇ ଏଡ଼େ ନେଉଳଟେ ପଡ଼ିଥିବାର ଦେଖିଲା । ସେ ସାଙ୍ଗେ ସାଙ୍ଗେ କହିଲା—ପଣ୍ଡିତେ ଆଜ୍ଞା, ହେଇଟି ସେ ନେଉଳଟା ଝାଡ଼ାରେ ପଡ଼ିଛି । ଓହୋ ! ମୋ ଜୀବନ ରହିଗଲା । ହେ ପ୍ରଭୁ ଜଗନ୍ନାଥେ, ଧନ୍ୟ ତୁମ ମହିମା । ଓହୋ ! କେଡ଼େ ବଡ଼ ଜନ୍ତୁ ହୋଇଛି । କେଡ଼େ

ଲାଞ୍ଚ ମୁଣ୍ଡରେ । ତ ତାକୁ ବଳ ହେଲା । ଇମିତ କେତେ କଥା କହ ତାକୁ ଓଲଟ ପାଲଟ କରୁଥାଏ ।

ପଣ୍ଡିତେ କହୁଲେ —ହଁଯେ୍ଁ ମହାତ୍ମନ ! ଅଭ୍ ମଲ ଗୁଡ଼ାକ ପାଣ୍ଡି କର କଣ ହେବ ? ଜାଣିଲେଇଁ ତ ଅମ ବେଗ ଗଲ । ଏବେ ସେଠ ଶପାଶରି କର ଦେଖିଲ—ଅଜ ଖରଚ ଲାଗୁଚି କ ?

କୁଂଥୁକୁଂଥୁ କହଲ—ହଁଯେ୍ଁ, ଅଜ ଖରଚ ଲାଗିବ କାହିଁକ ? ନେଉଲ ଗୋଟାକଯାକ ପର ସବୁ ବାହାର ଗଲ । ଯେବେ ଟଣ୍ଡେ ଅଧେ ରହ ଯାଇଥାନ୍ତା, ତେବେ ସିନା ଖରଚ ଲାଗନ୍ତା ? ନ ହେଲେ ଅଜ ଖରଚ ଲଗିବ କାହିଁକ ?

ପଣ୍ଡିତେ କହଲେ—ହଜ, ତୁମେ ଅଗ ପ୍ରାଣ ପାଇଲ । ଏଜଠା ଯେବେ ଅଜ ପନ୍ଦର ଦନ ସେଠ ଭିତରେ ଥାନ୍ତା, ତେବେ ତୁମକୁ ଜଳଖିଆ କରୁଥାନ୍ତା । ଏବେ ଘରକୁ ଗଲ ।

ତା ପରେ ଦହେଁ ଘରକୁ ଅସିଲେ । ଘରେ ଏ କଥା ସମସ୍ତେ ଶୁଣି କୁଂଥୁକୁଂଥୁର ଅନନ୍ଦ ଦେଖି ବଡ଼ ଖୁସି ହେଲେ । ପଣ୍ଡିତଙ୍କୁ ସମସ୍ତେ ଧନ୍ୟ ଧନ୍ୟ କହଲେ ।

ପଣ୍ଡିତେ ବଦାୟ ମାଗିବାରୁ କୁଂଥୁକୁଂଥୁ କହଲ—ଅପଣ ମୋତେ ପ୍ରାଣ ଦେଇଚନ୍ତି, ଅପଣଙ୍କୁ କଣ ଦେବ କହନ୍ତୁ । ପଣ୍ଡିତେ କହଲେ—ଯେ୍ଁ ହୁକୁମ ଓଟଦ, ମୁଁ ଏଥିରେ କଛ ନେଇ ପାରିବ ନାହିଁ । ନେଲେ ଅଜ ହୁକୁମ କାଠୁ କରବ ନାହିଁ । ତୁମେ ଯେ ପ୍ରାଣ ପାଇଲ, ଏଇ ମୋର ଲକ୍ଷେ ଟଙ୍କା ।

ତା ପରେ କୁଂଥୁକୁଂଥୁ ପଣ୍ଡିତଙ୍କୁ ଦଣ୍ଡ ପ୍ରଣାମ କର ମହାସୁଖରେ ଘରେ ରହଲ । ପଣ୍ଡିତଙ୍କୁ ତାଙ୍କ ବୁଦ୍ଧି ଯୋଗେ ଗୁରୁଅଚ୍ଛେ ଧନ୍ୟ ଧନ୍ୟ କହଲେ ।



# ବିଧା

ଗଡ଼ାପୁର ନାଁରେ ଗୋଟିଏ ଗାଁ ଥିଲା । ଗାଁଟି ଯାକ ଲୋକ ବେଶି ମହାଜନ । ସେମାନଙ୍କ ଭିତରେ କୁବେର ସାହୁ ବୋଲି ଜଣେ ବଡ଼ ମହାଜନ ଥିଲା । ତାର ଅନେକ ଟଙ୍କା ସମ୍ପତ୍ତି । ସୁନା, ରୁପା, ଗାଈ, ଗୋଳା ତା ଘରେ ଖର୍ବ ଖର୍ବ । ସମ୍ପତ୍ତି ବୁଝିବାକୁ ଗୁମାସ୍ତା ତହସିଲଦାର ଗଣ୍ଡା ଗଣ୍ଡା । କୁବେରର ପୁଅ ଝିଅ ବେଶି ନ ଥିଲେ । ପୁଅ ହୋଇ ଖଣ୍ଡିଏ । ସେ ପୁଣି ଗେହ୍ଲା—ନାଁଟି ତାର ମନୁଆ । ମନୁଆ ଯାହା ଯେତେବେଳେ କହେ, ତାହା ସେତେବେଳେ ହୁଏ । ଗେହ୍ଲା ହେବାରୁ କେହି କିଛି କହିପାରନ୍ତି ନାହିଁ । ପିଲାଦିନୁଁ ମୂର୍ଖ ହୋଇ ବଢ଼ିଲା । ଦେଖୁ ଦେଖୁଁ ବାହା ବୟସ ହେଲା । ବାପ ପୁଅକୁ ବାହା କରିଦେବ ବୋଲି ଘରେ କଥା ହେଲା । ପୁଅ ବାହା କଥା ଶୁଣିଲା । ନାଁ ତ ମନୁଆ, କେଜାଣି କାହିଁକି ମନ ହେଲା, କହିଲା—ବାପା, ମୁଁ ଯାହାକୁ ବାହା ହେବି, ତାକୁ ଆଗ ବିଧେ ମାରିବି, ତେବେ ଯାଇ ବାହା ହେବି, ନୋହିଲେ ନାହିଁ । ଗେହ୍ଲା ପୁଅ ତ, ବାପା କହିଲେ—ଏୟା ତ, ହେଉ ଏବେ, ଆମର ତ ଅଚଳାଚଳ ସମ୍ପତ୍ତି, ଆମ ଘରେ ବାହା ହେବାକୁ ଶହ ଶହ ଲୋକ ରହିଁ ବସିଛନ୍ତି । ଏ କଥାକୁ କେହି ନାମଙ୍ଗ ହେବେ ନାହିଁ ।

ଏୟା ପରେ କନ୍ୟା ଠିକ୍ କରିବାକୁ ଗାଁକୁ ଗାଁ ଲୋକ ଗଲେ । ସତକୁ ସତ କୁବେର ଘରେ ଝିଅ ଦେବାକୁ ସମସ୍ତେ ରାଜି । ହେଲେ କଣ ହେବ, ବିଧା ମରା କଥାଟି ଶୁଣିଲେ ସମସ୍ତେ କନ୍ୟା ଦେବାକୁ ରାଜି ହୁଅନ୍ତି ନାହିଁ । ସବୁଠୁଁ ଖବର ଆସିଲା, ବିଧା ମରା ହେଲେ କେହି କନ୍ୟା ଦେବେ ନାହିଁ । ଏୟା ଦେଖି ପୁଅକୁ ବାପା ବୁଝାଇ କହିଲେ—ବାପା, ବିଧା ମରା କଥାଟି ଛାଡ଼, ନୋହିଲେ କନ୍ୟା ମିଳିବ ନାହିଁ । ମନୁଆ

କାହିଁକି ଏ କଥାରେ ଠିକ୍ ଉତ୍ତର ମିଳିବ! ସେ ଯେ କହିଲା—ବାଧା ନ ମାରିଲେ ମୁଁ ବାହା ହେବି ନାହିଁ ।

ବାପା ଆଉ କଣ କରିବେ ! ପୁଣି ଦୂର ଦୂର ଦେଶକୁ ମଣିଷ ପଠାଇଲେ । ଗୋଟେ ଗାଁରେ ଜଣେ ବଡ଼ ମହାଜନ ଥିଲେ । ତାର ଗୋଟିଏ ବୋଲି ଝିଅ । ଝିଅଟି ଯେମିତି ଦେଖିବା ସେମିତି ପିଅଣା । ସେ ମହାଜନ କୁବେର ଘରେ ଝିଅ ଦେବାକୁ ଆଗ ରାଜି ହେଲେ; ମାତ୍ର ବାଧା କଥା ଯେବେ ଶୁଣିଲେ, ତେବେ ରାଜି ହେଲେ ନାହିଁ । ଝିଅ ଶୁଣିଲା ଯେ ବାଧା ଅପମାନରେ ବାପା ମନ ଦୁଃଖ କରୁଛନ୍ତି । ତେବେ ବାପାଙ୍କ ପାଖେ ଅଳି କରି କହିଲା—ବାପା, ମୋତେ ସେଇଠାଇଁ ବାହା ଦିଅ, ବାଧା କଥା ମୁଁ ବୁଝିବି । ବାପା ଆଉ କଣ କରିବେ, ଝିଅ କଥାରେ ଭୁଲିଯାଇ ବାହା ପାଇଁ କାର୍ଯ୍ୟର ଜବାବ ଦେଲେ । କୁବେର ଘରେ କାର୍ଯ୍ୟର ଖବର ପହଞ୍ଚିଲା । ବାହା ଘର ପାଖେଇ ଆସିଲା । କୁବେର ବାହା ପାଇଁ ସବୁ ଯୋଗାଡ଼ କରି ବନ୍ଧୁବାନ୍ଧବ ଜାତି କୁଟୁମ୍ବ ସାଙ୍ଗରେ ଧରି ବହୁ ଆଡ଼ମ୍ବରରେ ପୁଅ ବାହା କରି ଗଲା । ସେ ମହାଜନ ଧନ ଦୌଲତରେ କାହାକୁ କମ୍ ନୁହନ୍ତି । ବଡ଼ ଜାକଜମକରେ ବାହା ଘର ହେଉଛି । ବେଦୀରେ ବରକନ୍ୟା ବସି କର୍ମ କରୁଛନ୍ତି । ଇମିତି ହଉ ହଉ ହାତଗଣ୍ଠି ପଡ଼ିବା ବେଳ ହେଲା । ସେତିକି ବେଳେ ବର କହିଲା—ମୁଁ ଆଗ ଏଇ ବେଦୀରେ କନ୍ୟାକୁ ବାଧାଏ ମାରିବି, ତେବେ ଯାଇ ହାତଗଣ୍ଠି ପଡ଼ିବ, ନ ହେଲେ ମୁଁ ଏ କନ୍ୟାକୁ ବାହା ହେବି ନାହିଁ । କନ୍ୟା ଏହା ଶୁଣି କହିଲା—ଏୟେ ଗୋଟିଏ ବଡ଼ କଥା କଣ ? ମୁଁ ତ ତୁମର ଭାର୍ଯ୍ୟା ହେବି, ତୁମର, ମୋ ଉପରେ ପୂରା ଅଧିକାର ହେବ । ବାଧାଏ କଣ, ପାଞ୍ଚ ବାଧା ମାରି ପାରିବ । ତେବେ ଇୟେ ତ ମୁଁ ତୁମର ହୋଇ ନାହିଁ— ମୁଁ ତ ଇଯାଏଁ ମୋ ବାପଘର ଅନ୍ନରେ ଚଳୁଛି, ମୁଁ ତୁମର ହେଲେ ତୁମେ ମୋତେ ମାରିବ । ବର କନ୍ୟାର ଏଇ କଥାରେ

ଜଣ ବୁଝିଲା ଲୋକ ଲାଗି, ଅଉ ଜିଦ୍ ନ ଧରି ଝାଡଗଣି ଦେଲେ । ମଣ୍ଡିଗଲା । ଚାଲିଘର ବଢ଼ିଗଲା । ବର କନ୍ୟା ବାହୁଡ଼ା ହେଲେ । ବର ଗାଁରେ ପହଞ୍ଚି ମଧୁଶଯ୍ୟା ଦିନ ଝିଅ ସେଇ ଜିଦ୍ ଧରିଲା । ସେ କହୁନ୍ତି—ମୁଁ ଅଗ ବଧାଏ ନ ମାଇଲେ ମଧୁଯଶ୍ୟା ହେବ ନାହିଁ ।

ଶୁଣି କନ୍ୟା କହିଲା—ଯେ କି କଥା ? ମୁଁ ତ ତୁମର ହେଲିଣି । ତୁମର ତ ମୋ ଜୀବନରେ ଅଧିକାର ଅଛି । ବଧାଏ କଣ ଦଶ ବଧା ମାର । ହେଲେ କଣ ହେବ, ମୁଁ ଏପର୍ଯ୍ୟନ୍ତ ତୁମ ରୋଜଗାରରେ ଚଳି ନାହିଁ, ଏବେ ତୁମ ବାପାଙ୍କ ଧନରେ ଚଳୁଛି । ଯେଉଁ ଦିନ ତୁମ ରୋଜଗାରରେ ଚଳିବି, ସେ ଦିନ ତୁମେ ମାରିବାଟା ଫାବିବ । ମନୁଅ ଏ କଥାରେ ଫେର୍ କଣ ବୁଝିଲା, କହିଲା—ତେବେ, ଅଜି ମଧୁଶଯ୍ୟା ବନ୍ଦ ହେଉ, ମୁଁ ରୋଜଗାର କରେଁ, ତାପରେ ବଧା ମାରିବି ତ ଯାଇ ମଧୁଶଯ୍ୟା ହେବ । ଶେଷକୁ ସେଇ କଥା ହେଲା ତହିଁ ଆରଦିନ ମନୁଅ ବାପାକୁ କହିଲା—ବାପା ! ମୋତେ ପାଣ୍ଠି କିଛି ଦିଅ, ଅଉ ଲୋକବାକ ଡଙ୍ଗା ବୋଇତ କିଛି ଦିଅ, ମୁଁ ବିଦେଶକୁ ବଣିଜ କରିବାକୁ ଯିବି । ବାପା କହିଲେ—ତୋର କଣ ନାହିଁ, ତୁ କାହିଁକି ବିଦେଶ ଯିବୁ ? ସେ ଯେତେ ମନା କଲେ ପୁଅ ମନୁଅ ମନା ମାନିଲା ନାହିଁ । ବାପା ପଚିଶ ଖଣ୍ଡ ବୋଇତ, ତିନକୋଟି ଟଙ୍କା, ଅଉ ଲୋକବାକ ଯାହା ଦରକାର, ତା ସବୁ ଠିକଣା କରିଦେଲେ । ପୁଅ ବିଦେଶ ଯିବା କଥା ସ୍ଥିର ହେଲା । ବୋହୂ ଏ ସବୁ କଥା ଦେଖି ଶୁଣି ବାପଘରକୁ ଚିଠି ଖବର ଦେଲା । ଶବାଶି ଗୌଡ଼ ଅସି ବୋହୂକୁ ନେଇଗଲେ ।

ମହାଜନ ଝିଅ ବାପଙ୍କରେ ଦେଇଛି ବିଦେଶକୁ ବଣିଜ କରି ଯିବାକୁ ବାପାଙ୍କୁ ବହୁତ କହିଲା । 'ମାଇକିଆ ଝିଅଟେ, କାହିଁକି ବଣିଜ କରିବାକୁ ଯିବୁ ?' ବୋଲି ବାପା ବହୁତ ମନା କଲେ । ଝିଅ ସେ ମନା ନ ମାନି ବହୁତ ଅଳି କରିବାରୁ ବାପା ପଚିଶ ଛବିଶ ଖଣ୍ଡ

ବୋଇତ, ଲୋକବାକ, ଟଙ୍କା ଜିନିଷ ସବୁ ଠିକଣା କରି ଦେଲେ । ମହାଜନ ପିଅ ବୋଇତ ନେଇ ବଣିଜ କରି ବାହାରିଲେ । ମନୁଅ ଯୁ ଦେଶକୁ ଯିବ, ମଧ୍ୟ ସେ କଥା ଜାଣିଥିଲେ । ମହାଜନ ପିଅ ସେଇ ଦେଶ ଆଡ଼କୁ ବୋଇତ ଚଳାଇଲେ ! ମନୁଅ ଯୁ ଆଗରୁ ବିଦେଶ ଯାଇଥାଏ ମହାଜନ ପିଅ ତା ପଛେ ପଛେ ବାହାରିଲେ ।

ମନୁଅ ସମୁଦ୍ରରେ ଯାଉ ଯାଉ ବାଟରେ ଗୋଟେ ଦ୍ୱୀପ ଦେଖିଲେ । ସେ ଦ୍ୱୀପ ନାଁ ହଣ୍ଡ୍ୟାପୁଖି । ସିଠାଇଁ ବୋଇତ ଖଟାଇ ଦେଇ ଦ୍ୱୀପ ଭିତରକୁ ଗଲେ । ସେଠାରେ କେତେଗୁଡ଼ିଏ ଲୋକ ଅଛନ୍ତି; ସେ ସମସ୍ତେ ଠକ । ସେମାନଙ୍କ ଭିତରେ ଜଣେ ଛୋଟା ଥିଲେ; ସେ ସବୁଠାରୁ ବୁଦ୍ଧିଆ । ବାକି ସମସ୍ତେ ତାର ହୁକୁମରେ ଚଳନ୍ତି । ମନୁଅ ପହଞ୍ଚି ଦେଖେ କି ଛୋଟା ବସିଛି, ତାକୁ ଗୁହାରିପାଖରେ ଗୁଡ଼ିଏ ଲୋକ ବେଢ଼ି ରହିଛନ୍ତି । ଠକ ସର୍ଦ୍ଦାର ଛୋଟା, ମନୁଅକୁ ଦେଖି ପାଖକୁ ଡକାଇଲେ । ମନୁଅ ପାଖକୁ ଗଲାରେ ତାର ପରିଚୟ ବୁଝିନେଲେ । ଛୋଟା ମନୁଅକୁ ଗୋଟେ ବଡ଼ ମହାଜନ ବୋଲି ଜାଣିବାରେ କହିଲେ—ହଇଓ ମହାଜନ ପୁଅ ! ତୁମ ବାପା ମୋର ସଙ୍ଗାତ । ସେ ବରାବର ଏଠାକୁ ବଣିଜ କରିବାକୁ ଆସୁଥିଲେ । ତାଙ୍କ ଗୋଡ଼ ଛୋଟା ହୋଇ ଯିବାରୁ ସେ ଆଉ ନିଜ ଦେଶକୁ ଯାଇ ପାରିଲେ ନାହିଁ । ସଙ୍ଗାତ ତ, ସେ ମତେ କହିଲେ— ସଙ୍ଗାତ ! ତୁମେ ମୋ ଗୋଡ଼ ଯୋଡ଼ାକ ନେଇ ତୁମ ଗୋଡ଼ ଯୋଡ଼ାକ ମତେ ଦେଇଦିଅ । ମୁଁ ପୁଣି ଫେରି ଆସିଲେ ତୁମ ଗୋଡ଼ ଫେରାଇ ଦେବି । ଯୁ କହି ମୋ ଗୋଡ଼ ଯୋଡ଼ିକ ନେଲେ, ଏବେ କାଳେ କାଳେ ହେଲା କି ଆସିଲେ, ମୁଁ ଛୋଟା ହେଲା ଚଳେ କିପରି ? ଇମିତି ଠକପଣିଆ କଣ ଭଲ ? କେବେ ତୁମେ ତାଙ୍କ ପୁଅ ଆସି ପହଞ୍ଚିଛ, ମୁଁ ଛାଡ଼େ କିବା ? ଠକ ସର୍ଦ୍ଦାର ଯୁ କହି କହିଲେ—କିଏ ଅଛ ରେ ! ବେଗେ ଯୁାକୁ ବନ୍ଦୀ କରି ଯୁା ଜିନିଷପତ୍ର, ଡଙ୍ଗା ବୋଇତ ସବୁ ଛଡ଼ାଇ ରଖ । ମନୁଅ ଏହା ଶୁଣି

ଭାବୁକେ ଥରହର ହୋଇ କହିଲା—ମୁଁ ଏସବୁ କଥା ଜାଣେ ନାହିଁ, ମୋଠାରୁ ଏ ଟୋକାଟି ବାନ୍ଧା ରଖି ଛାଡ଼ି ଦିଅ। ମୁଁ ପୁଣି ଗାଁକୁ ଗଲେ ତାହାଙ୍କୁ କହି ମୋ ଘୋଡ଼ା ଯୋଡ଼ିକ ପଠାଇଦେବି। ଠକ ସର୍ଦ୍ଦାର ମହାଜନ ପୁଅ କଥାରେ ରାଜି ହୋଇ ତାର ପାଞ୍ଚ ଖଣ୍ଡ ଜାହାଜ ଛଡ଼ାଇ ରଖିଲା। ମହାଜନପୁଅ ମୁହଁ ଶୁଖାଇ କେତେ ବାଟ ଗଲା।

ଯାଉ ଯାଉ ଚମ୍ପାପୁର ବୋଲି ଗୋଟିଏ ଗାଁ ପଡ଼ିଲା। ସେ ଗାଁର ଲୋକେ ବାଟ ମାରଣା ବୋଲି ଡାକୁ। ସେଥିରେ ଜଣେ ବେଶ୍ୟା ଥିଲା। ସେ ସୁନ୍ଦର ମାରଣା ପଣିଆ କରି ଅସୁମାରି ଧନ କରିଥାଏ। ତା ପାଖରେ ଦଶ ବାର ଡକୈତ ବହୁତ ଗୁଜର କରନ୍ତି। ଡକୈତମାନେ ଦଶ କୋଶ ବିଶ କୋଶର ଖବର ଘଡ଼ିକେ ଆଣି ଦଅନ୍ତି। ମହାଜନ ପୁଅ ସେ ଗାଁ ଅଧା ପାଖ ହେଲା ବେଳକୁ ସେ ବେଶ୍ୟା ତା ଆସୁଥିବା ଖବର ପାଇ ଜଗି ବସିଥାଏ। ମହାଜନ ପୁଅ ସେଠେଇଁ ଯିମିତି ପହଞ୍ଚିଛି, ସେ ବେଶ୍ୟା ତାକୁ ଲୋକ ପଠାଇ ଧରାଇ ଆଣି ତା ପରିଚୟ ପଚାରିଲା। ଠିକଠା ପାଇଲା ଉତ୍ତାରୁ ବେଶ୍ୟା କହିଲା—ମୁଁ କେତେ କାଳୁ ଏପରି ଜଗି ବସିଛି। ଆଜି ସରିକା ଫଳ ଫଳିଲା। ତୁମ ବାପା ମୋତେ ବିଭା ହେଲେ, କିଛି କାଳ ମୋ ସଙ୍ଗେ ରହିଲେ। ତାପରେ ଗାଁକୁ ଯାଉଚି, ଅଳ୍ପ ଦିନେ ଫେରିଆସିବି ବୋଲି କହି କେତେ କାଳ ହେଲା ଗଲେ ଯେ ଗଲେ, ଆଉ ଫେରିଲେ ନାହିଁ। ଚଳିବା ପାଇଁ ମୋତେ ଯାହା ଦେଇ ଯାଇଥିଲେ, ସେ କେଉଁକାଳୁ ସରିଲାଣି, ମୁଁ ଚଳେ କିମିତି, ସେ ଚିଠିଏ ଲେଖିଲେ ନାହିଁ। ଏବେ ମୋ ଭାଗ୍ୟକୁ ତୁମେ ଆସିଚ, ମତେ ସଙ୍ଗରେ ନେଇ ତୁମ ବାପାଙ୍କ ପାଖରେ ଛାଡ଼ି ଦେଇ ଆସ; ନୋହିଲେ ତୁମକୁ ଛାଡ଼ିବି ନାହିଁ।

ମହାଜନ ପୁଅ ଦେଖିଲା—ଏ ତ ବଡ଼ ଅଡୁଆ କଥା। ବାପା ଯାକୁ ବିଭା ହୋଇଥିଲେ କି ନା, ମୁଁ ଜାଣେ ନାହିଁ। ବିଭା ହୋଇ

ଥିଲେ ଅବା ମୁଁ ସ୍ୱାକୁ ନେଇ କୁଆଡ଼େ ଯିବି ? ମୁଁ ତ ଦେଶ ଦେଶାନ୍ତର ଯିବି, ଏଥିରୁ ଗୋଟେ ନେଇ କୁଆଡ଼େ ବୁଲିବି ? ମୁଁ ତ ପୁଣି ମତେ ଛଡ଼ିବ ନାହିଁ ବୋଲି ରହି ବସିଲିଣି — କଣ କରିବ ? ପଛକୁ ତାକୁ ଦକ୍ଷିଣ ଜାହାଜ ଦେଇ କହିଲା—ତୁମେ ଏ ଜାହାଜ ଦକ୍ଷିଣ ରଖ, ମୁଁ ଫେରିଲା ବେଳେ ତୁମକୁ ସାଙ୍ଗରେ ନେଇ ଯିବି ।

ବେଶ୍ୟା ସତେ କଣ ମହାଜନ ପୁଅ ସାଙ୍ଗରେ ଯାନ୍ତା କି ? ତାକୁ ଧନ ମାରି ନେବାକୁ ଏପରି ଫିକର କରୁଥିଲା ସିନା ? ଏବେ ତ ଧନ ମିଳିଗଲା, ଆଉ କାହିଁକି ଓଜର କରିବ ? ମହାଜନ ପୁଅ ସେଠିରୁ ବାହାରି ଯାଇ ପୁଣି କେତେ ବାଟ ଗଲା ।

ଯାଉ ଯାଉ ରେମ୍ପାଛଡ଼ାପୁର ବୋଲି ଗୋଟେ ଗାଁରେ ପହଞ୍ଚିଲା । ସେ ଗାଁର ଧୋବା ଗୁଡ଼େ ନଈକୂଳରେ ସେ ଦେଶ ରଜାଙ୍କର ଲୁଗା କାଚୁଥାନ୍ତି । ସେ ରାଜ୍ୟ ତ ଠକରାଜ୍ୟ—ରଜା ଯିମିତି ଠକ, ପ୍ରଜା ସେମିତି ଠକ । ଏ ଧୋବାଗୁଡ଼ାକ ମଧ୍ୟ ମହାଠକ । ସେଇ ଧୋବା ତୁଠରେ ଗୁଡ଼ାଏ ବଗ ବସିଥିଲେ । ମହାଜନ ପୁଅର ଜାହାଜ ଗୁଡ଼ାକ ସେଠାରେ ଲାଗିବାରେ ବଗଯାକ ଫରର୍ କରି ଉଡ଼ିଗଲେ । ଧୋବା ଯାକ ଏକମେଳ ହୋଇ ମହାଜନ ପୁଅକୁ ଧରି ଆଣି ପଚାରିଲେ—କିଓ ! ଏ କଣ ? ତୁମେ ଜାଣ ନାହିଁ ଆମେ ରଜାଘର ଧୋବା ବୋଲି ? ଏବେ ତୁମରି ଯୋଗୁଁ ଏତେ ବଗଯାକ ଉଡ଼ିଗଲେ । ତା ଆମେ ଆଉ କୁଠଉଁ ପାଇବୁ ? ଯେବେ ବଗଯାକ ଧରି ଆଣିଦେବ, ତେବେ ତୁମକୁ ଛାଡ଼ିଦେବୁ, ନୋହିଲେ ରଜାଙ୍କୁ ଜଣାଇ ତୁମକୁ ବନ୍ଦଶାଳରେ ପକାଇବୁ ।

ମହାଜନ ପୁଅ କହିଲା—କିଓ ! ରଜାଙ୍କ ଲୁଗା ଧୋବରେ ବଗ କଣ କରନ୍ତେ ?

ଧୋବେ କହିଲେ—ତାଙ୍କୁ ଦେଖି ତାଙ୍କ ପକ୍ଷି ପରି ଧୋବ କରୁଥିଲୁ । ଏବେ ଆମେ କାହାକୁ ଚାହିଁ ଆଉ ଧୋବ କରିବୁ ?

ଏ କଥାରେ ମହାଜନ ପୁଅ ଡରିଯାଇ କହିଲା—ଯାହା ହେବାର ତାହା ହେଲାଣି, ମୋଠାରୁ ଏଣିକି ତାହାକୁ ରାଗ ପଡ଼ୁଛିକି, ଅଉ ଦେଖାଅ ନାହିଁ। ଧୋବାସବୁ ଏହିଁ ଦଶ୍‌ଟି ଜାହାଜ ପାଇଲେ; ତହୁଁ ମହାଜନ ପୁଅକୁ ଛାଡ଼ିଦେଲେ।

ମହାଜନ ପୁଅ ପୁଣି କେତେ ବାଟ ଗଲା। ଯାଉଁ ଯାଉଁ ସେ ଦେଶର ରଜାଙ୍କ ଗଡ଼ରେ ପହଞ୍ଚିଲା। ସେ ତ ଠକ ରଜା; କାହାକୁ କପଟ ଠକି ଧନ ଦରବ ନେବ, ଏଇ କଥା ରାତିଦିନ ରଜାର ଚିନ୍ତା। ଏଥିପାଇଁ ଶହ ଶହ ଲୋକ ଲାଗିଥାନ୍ତି। ମହାଜନ ପୁଅ ଯିମିତି ସେ ରାଜ୍ୟରେ ଗୋଡ଼ ଦେଇଛି, ରଜାକୁ ସାଙ୍ଗେ ସାଙ୍ଗେ ଖବର ମିଳିଗଲା। ରଜା ଶୁଣିଲା ଯେ ମହାଜନ ସାଥିରେ ପନ୍ଦର କୋଡ଼ିଏ ଜାହାଜ ଅଛି। ଏଥିରେ ରଜା ହାମ୍ଲା ହୋଇ ରହିପାରେ କି? ମହାଜନ ପୁଅ ପାଖକୁ ଗୁର ଗଲା। ରଜା ଡକରାରେ ମହାଜନ ପୁଅ ରଜା ଛାମୁରେ ହାଜର ହେଲା। ରଜା ତାର ପରିଚୟ ପଚାରିଲା। ତାପରେ ଜୁଆ ଖେଳିବାକୁ ରଜା ତାକୁ କହିଲା। ମହାଜନ ପୁଅ ଏକେ ପିଲାଦିନୁ ଗେହ୍ଲାରେ ବଢ଼ିଛି, ସେଥିରେ ପୁଣି ଅବୁଝିଆ। ବୁଝିଆ ହେଲେ ଅବା କଣ କରନ୍ତା! ରଜାର ରାଜ୍ୟରେ ଅଛି, ତେଣୁ ନାହିଁ କରିବାକୁ ସାହସ ହେଲା ନାହିଁ। କଥା ହେଲା—ଖେଳ ରାତିଯାକ ହେବ। ରଜାଘର ବିଲେଇ ମୁଣ୍ଡରେ ଦୀପ ଥୁଆ ହେବ। ଯେବେ ବିଲେଇ ମୁଣ୍ଡରୁ ଦୀପ ପଡ଼ିଯାଏ, ତେବେ ମହାଜନ ପୁଅ ସେ-ରାଜ୍ୟଟା ପାଇବ; ନୋହିଲେ ଯେତେ ଜାହାଜ, ଧନ ସମ୍ପତ୍ତି ଅଛି, ତା ସବୁ ରଜା ନେବ। ପଛକୁ ମହାଜନ ପୁଅ ରଜାଘର ଘୋଡ଼ା ଘାସିଆ ହେବ। ଏଥିରେ ମହାଜନ ପୁଅ ରାଜି ହୋଇଗଲା। ସେଦିନ ରାତିରେ ବିଲେଇ ମୁଣ୍ଡରେ ଦୀପ ଥୁଆ ହୋଇ ଖେଳ ହେଲା। ଖେଳରେ ରାତି ପାହିଲା ପଛକେ ବିଲେଇ ମୁଣ୍ଡରୁ ଦୀପ ପଡ଼ିଲା ନାହିଁ। ରଜା ତ ବିଲେଇକୁ ପିଲାଦିନରୁ ଏହା ଶିଖାଇଛି, ଆଉ ଦୀପ ପଡ଼ନ୍ତା

ଜାଣିବ ? ବାଘ ଯାହବାରେ ଉଜା ଜଣେ ଅନୁସାରେ ମହାଜନ ପୁଅ ଯେତେ ଟଙ୍କା, ଧନ ସମ୍ପତ୍ତି ଆଉ ଲୋକବାକ ସବୁ ନେଇ ତାଙ୍କୁ ଘୋଡ଼ା ପାଖିଆ କରି ରଖି ଥିଲା । ମହାଜନ ପୁଅ ଆଉ ଜଣ ଜଣ ଘୋଡ଼ା ପାଇଁ ଘାସ ଅଣି ଘୋଡ଼ା ଲେଣ୍ଡି ପୋଛି ମୁଠେ ମୁଠେ ଖଇ ଖାଇ ସେହି ଘୋଡ଼ାଶାଳରେ ପଡ଼ିଥାଏ ।

ତେଣେ ମହାଜନ ଝିଅ ଅଣ୍ଡିରା ବେଶରେ ଜହାଜମାନ ଚଲାଇ ମହାଜନ ପୁଅ ପଛେ ପଛେ ଆସୁଥାଏ । ସେ ସିମିତ ଯେତେବେଳେ ହଜ୍ୟାପୁର ନଗରରେ ପହଞ୍ଚିଲା, ସେତେବେଳେ ଘୋଡ଼ା ଠକ ସାଙ୍ଗେ ଦେଖା ହେଲା । ଘୋଡ଼ା ଯିମିତ ମହାଜନ ପୁଅକୁ କହିଥିଲା, ସେହିପରି ମହାଜନ-ଝିଅକୁ କହିଲା—ତୁମ ବାପା ମୋର ସଙ୍ଗାତ, ସେ ବର୍ଷବର ଏଠିକି ବଣିଜ କରୁଥିଲେ । ତାଙ୍କ ଗୋଡ଼ ଘୋଡ଼ା ଦେବାକୁ ଅଉ ଗାଁକୁ ଯାଇ ପାରୁ ନ ଥିଲି । ଦିନେ ମତେ କହିଲେ—ସଙ୍ଗାତ ! ମୋ ଗୋଡ଼-ଯୋଡ଼ାକ ରଖି ତୁମ ଗୋଡ଼ ଯୋଡ଼ାକ ଦେଇଥାଅ, ମୁଁ ପୁଣି ଗାଁରୁ ଫେରିକରି ତୁମ ଗୋଡ଼ ତୁମକୁ ଦେଇ ଦେଉଛି । ସଙ୍ଗାତ ତ, ମୋ ଗୋଡ଼-ଯୋଡ଼କ ଦେଲି । ଏତେବ କାଳେ କାଳେ ହେଲା, ସେ ନ ଫେରିଲେ । ମୁଁ ଏତେ ଦିନେ କାଲୁ କଷ୍ଟ ପାଉଛି । ଦୈବେ ତୁମେ ତାଙ୍କ ପୁଅ ପହଞ୍ଚିଛ । ଏବେ ମୋ ଗୋଡ଼ ଯୋଡ଼କ ଦିଅ, ନୋହିଲେ ତୁମକୁ ଛାଡ଼ିବ ନାହିଁ ।

ମହାଜନ ଝିଅ ଭାରି ବୁଦ୍ଧିଆ । ସେ ବୁଝିନେଲା—ଏ ଲୋକଟା ଠକ । ପୁଣି ବୁଝିଲା, ମହାଜନ ପୁଅକୁ ଏହିପରି ହଇରାଣ କରି ତାର ଜେତେକ ଖଣ୍ଡ ଜାହାଜ ଛଡ଼ାଇ ରଖିଛି । ତେଣୁ ଗୋଟେ ବୁଦ୍ଧିରେ କହିଲା—ଅଛି, ଯେବେ ଇମିତ କଥା, ତୁମେ ବ୍ୟସ୍ତ କାହିଁ ହେଉଛ ? ମୁଁ ତୁମକୁ ତୁମ ଗୋଡ଼ ଅଣାଇ ଦେଉଛି । ତୁମ ଗୋଡ଼ ଅସିଲେ ଯାଇ ମୁଁ ଯିବି । ତୁମେ ଆଉ ବ୍ୟସ୍ତ ହୁଅ ନାହିଁ । ଯା କହି ନିଜ ଚାକର ବାକରଙ୍କୁ ଡାକି କହିଲା—କିଏ ଅଛ ରେ ! ଆମର ସବୁ କାମ ବନ୍ଦ କରି

ଅଗ ସ୍ତ୍ରୀଙ୍କର ଶ୍ରେଷ୍ଠା ଗୋଡ଼ ଯୋଡ଼ାକ ହାଣି ନେଇ ବାପଙ୍କୁ ଦେଇ ବାପାଙ୍କ ଠାଉଁ ସ୍ତ୍ରୀଙ୍କ ଗୋଡ଼ ଆଣି ଦିଅ । ଏତକ ନ ହେଲେ ମୁଁ ଏଠାରୁ ଯିବି ନାହିଁ । ମହାଜନ ଝିଅ ନ୍ୟାୟମତେ ଯହୁଁ ଲୋକମାନେ କତୁରି ଧରି ଶ୍ରେଷ୍ଠା ଗୋଡ଼ ହାଣିବାକୁ ଆସିଲେ, ଶ୍ରେଷ୍ଠା ସେଥିରେ ଡର ଯାଇ କହିଲା, ନାହିଁ ନାହିଁ, ତୁମ ବାପା ମୋ ଗୋଡ଼ ନେଇ ନାହାନ୍ତି, ଆପଣ ସବୁ ଠକ, ଏହିପରି ଠକି କରି ଚାଲ । ତୁମେ ଆଉ ଆମକୁ ହଟହଟା ନ କରି ଦଶଖଣ୍ଡ ଜାହାଜ ନେଇ ଏଠାରୁ ଯାଅ । ଶ୍ରେଷ୍ଠା ଯେ ଜାହାଜ ମହାଜନପୁଅ ଠାଉଁ ରଖିଥିଲା, ତାହା ମହାଜନ ଝିଅକୁ ଦେଇ ବିଦା କଲା ।

ତାପରେ ମହାଜନ ଝିଅ ଯାଉ ଯାଉ ଖଣ୍ଡପୁର ବେଶ୍ୟା ହାତରେ ପଡ଼ିଲା । ସେ ବେଶ୍ୟା ସେହିପରି ତାକୁ କହିଲା—ତୁମ ବାପା ମୋତେ ବନ୍ଧା ହୋଇ ଏଠାଇଁ ମୋତିଏ ରଖି ଦେଇ ଗଲେ । କାଳେ କାଳେ ହେଲା ଗଲେ, ମୁଁ କମିତି ଦେବି, ତହିଁର କିଛି ଯୋଗାଡ଼ କରିଗଲେ ନାହିଁ । ତୁମେ ମତେ ତୁମ ବାପାଙ୍କ ପାଖକୁ ନେଇ ଚାଲ; ନ ହେଲେ ତୁମକୁ ଛାଡ଼ିବି ନାହିଁ ।

ମହାଜନ ଝିଅ ଦେଖିଲା ଯେ—ଏହୁ ଆଉରି ଏକ ଠକ । ଏହାକୁ ତ ନ ଠକିଲେ ହେବ ନାହିଁ । ତହୁଁ କହିଲା—ମୁଁ ତ ତୁମରି ପାଖକୁ ଆସିଚି । କଣ କହିବି, ଅଢ଼ାଇ ବର୍ଷ ମାସ ହେଲା ବାପା ମରିଗଲେ । ମରିଗଲା ବେଳେ ମତେ ତୁମରି କଥା କହି ଯାଇଚନ୍ତି । ସେ କହିଚନ୍ତି—ସେ ମଲା ପରେ ତାଙ୍କର ଖଣ୍ଡିଏ ହାଡ଼ ଆଣି ତା ସାଙ୍ଗେ ତୁମକୁ ସତୀଦାହ କରିବାକୁ । ମୁଁ ତାଙ୍କ ପାଖରେ ସେତେବେଳେ ସତ୍ୟ କରିଥିଲି । ଏବେ ତାଙ୍କର ଖଣ୍ଡିଏ ହାଡ଼ ଆଣିଚି । ତୁମେ ଆସ, ତୁମର ସତୀଦାହ କରିଦେବି । କିଏ ଅଛ ରେ ! ଏହାଙ୍କୁ ଧର, ମଶାଣିକି ନେଇ ଚାଲ । ଯହୁଁ ମହାଜନ ଝିଅର ଲୋକବାକ ତାକୁ ଦାହ କରିବାକୁ ବାହାରି

ପଡ଼ିଲେ, ତହୁଁ ବେଶ୍ୟାର ଲୋତକରୁ ପାଣି ହୋଇଗଲା । ସେ କହିଲା, 'ନାହିଁ, ନାହିଁ, ସେ ସବୁ ମିଛ କଥା ! ମତେ ପୋଡ଼ି ପକାଅ ନାହିଁ । ମୋଠଉଁ ଦକ୍ଷିଣା ତାହାଙ୍କ ଲକ୍ଷ ନେଇ ତୁମେ ଏଠାରୁ ଯାଅ । ମହାଜନ-ଝିଅ ପୁଣି ଦକ୍ଷିଣା ତାହାଙ୍କ ରୋଜଗାର କରି ଚାଲିଲା ।

ପୁଣି ଯାଉ ଯାଉ ସେପାଛଡ଼ାପୁର ଧୋବାଙ୍କ ସଙ୍ଗେ ଦେଖା ହେଲା । ଧୋବାଯାକ ଯିମିତି ବଗ ଉଡ଼ାଇବାରୁ ମହାଜନ ପୁଅକୁ ଧମକାଇ-ଥିଲେ, ସ୍ୱାକୁ ମଧ ସିମିତି ଧମକାଇଲେ । ସେ କହିଲା—ଅରେ ! ତୁମର ସବୁ ତ ଗୃହର ଅଜ ରହିବ ନାହିଁ, ଅଜ ବଗ କଣ ହେବ ? ଧୋବେ ସ୍ୱା ଶୁଣି ପଚାରିଲେ—ଅମ ଗୃହର କାହିଁକି ଯିବ ? ମହାଜନ ଝିଅ କହିଲା—ଅରେ, ତୁମେ କିନା ବଗ ପକ୍ଷି ଘର ଧୋବ କହୁଥିଲ, ତୁମ ରାଜ୍ୟରେ କୁଅ ନାହାନ୍ତି, ତା ପକ୍ଷି ତ ଦେଖି ନାହଁ, ତା ଘର ଧୋବ କାହୁଁ କରିବ ? ମୁଁ କୁଅ ପକ୍ଷି ଘର ଧୋବ ଜାଣେ ବୋଲି ତୁମ ରଜା ମୋତେ ଡକାଇ ନଉଛନ୍ତି । ମୁଁ କୁଅ ପକ୍ଷି ଘର ଧୋବ କଲେ, ରଜା ତୁମ୍ଭକୁ କାହିଁକି ରଖିବେ ?

ଧୋବା ସବୁ ଏ କଥା ଶୁଣିବାରେ ତାଙ୍କର ସବୁର ମୁହଁ ଶୁଖି-ଗଲା । ତାଙ୍କର ଏବେ ଦାନା ପାଣୀ ଉଠିଯିବ । ସେ ଅଉ ମହାଜନ ଝିଅକୁ ଠକିବେ କଣ ? ଏବେ ତାକୁ କିଛି ଦଅ ଦେଇ କରି ବୋଧ ଶୋଧ କରି ନ ଛଡ଼ିଲେ ପାତପୁରୁଷୀ ରୋଜଗାର ଯେବା ଯିବ । ତହୁଁ ଧୋବେ କହିଲେ—ଯାହା ହେଲା, ହେଲା, ଅମେ ତୁମକୁ ଦକ୍ଷିଣା ତାହାଙ୍କ ଦଉଚୁ, ତୁମେ ସେତକ ନେଇ ତୁମ ଗାଁକୁ ଫେରିଯାଅ । ଅଉ ଅମ ଦାନା ପାଣୀରେ ଧୂଳି ଦିଅ ନାହିଁ ।

ମହାଜନ ଝିଅ କହିଲା—ରଜା ଯେତେବେଳେ ଡକାଉଚନ୍ତି, ନ ଯିବ କମିତି ? ତୁମେ ସବୁ ଅଉ ଭୟ କର ନାହିଁ । ମୁଁ ଖାଲି ରଜାଙ୍କୁ ଦେଖାଦେଇ କରି ଏଠାରେ ରହି ପାରିବ ନାହିଁ ବୋଲି କହି ମୋ ଗାଁକୁ ଫେରିଯିବ ।

ଏଥିରେ ଥୋଡ଼େ ଖୁସି ହୋଇ ମହାଜନ ପୁଅ ଠାକୁ ଦେଇ ଦାଣ୍ଡି ତ ାଗ୍ର ରଖିଥିଲେ, ତାହା ସ୍ତ୍ରୀକୁ ଦେଇ ବଦା କଲେ ।

ମହାଜନ ଝିଅ ସେଠାରୁ ଯାଇ ଠକ ରଜା ଗଡ଼ରେ ପହଞ୍ଚିଲା । ସେଠାରେ ଶୁଣିଲା, ତାର ସ୍ୱାମୀ ଜୁଆ ଖେଳରେ ହାରି ସବୁ ଧନ ଦରବ ରଜାକୁ ଦେଇ ରଜାର ଘୋଡ଼ା ଘାସିଆ ହୋଇଛି । ମହାଜନ ଝିଅର ରଜା ସାଙ୍ଗେ ଦେଖା ହବାରେ ରଜା ସେହିପରି ବଗୁଡ଼ି ମୁଣ୍ଡରେ ଘଡ଼ ରଖି ଖେଳିବା କଥା କହିଲା । ମହାଜନ ଝିଅ ଲୋକଙ୍କଠାରୁ ଖେଳର ଢଙ୍ଗ ଶୁଣିଥିଲା । ସେ ସେ କଥା ଶୁଣିଲା ବେଳୁ ତାର ଉପାୟ ପାଞ୍ଚି ରଖିଥିଲା । ରଜା ଖେଳ କଥା କହିବାରେ ସେ ଖେଳିବାକୁ ମାଗିଗଲା ।

ମହାଜନ ଝିଅ ଖେଳିବାକୁ ଅସିଲାବେଳେ ଗୋଟିଏ ଫତୁଆରେ ଛଅ ସାତୋଟି ମୂଷା ଛୁଆ ପୁରାଇ ଲୁଚାଇ ଅଣିଥାଏ । ରଜା ସାଙ୍ଗେ ଖେଳ ଲାଗିଲା । ରଜା ବସିଥିଲା—ସେ ତ ନିଶ୍ଚେ ହାରିବ, ଅଡ଼ ବାଜିରେ ପୁଣି ଗୁଡ଼େ ଧନ ଦରବ ମିଳିଯିବ । ମହାଜନ ଝିଅ କଣ କଲା ନା—ଖେଳୁ ଖେଳୁ ଚୁପ୍ କରି ଫତୁଆଟି ଫିଟାଇ ଦେଲା । ମୂଷା ଛୁଆ-ଗୁଡ଼ାକ କଲ୍‌ବଲ ହୋଇ ଘରଯାକ ବୁଲିଲେ । ବଗୁଡ଼ି ମୂଷା ଦେଖି ଥୟ ହୋଇ ରହି ନ ପାରି ମୂଷା ଖାଇବାକୁ ଦୌଡ଼ିଲା । ତା ମୁଣ୍ଡରୁ ଘଡ଼ ପଡ଼ିଗଲା । ରଜା ହାରିଯିବାରୁ ମହାଜନ ଝିଅକୁ କହିଲା—ଏବେ ଏ ରାଜ୍ୟ ତୁମର ହେଲା । ମହାଜନ ଝିଅ କହିଲା—ମୋର ରାଜ୍ୟ ଦରକାର ନାହିଁ । ତୁମେ ଯେ ମହାଜନ ପୁଅକୁ ଘୋଡ଼ା ଘାସିଆ କରି ରଖିଛ, ତାକୁ ଖଲାସ କରିଦେଲେ ମୁଁ ସବୁ ପାଇଲି । ରଜା ଖୁସିରେ ସିଲାଟେ ମହାଜନ ପୁଅକୁ ଅଣି ଝରବାର କରାଇ ଖଲାସ୍ କରିଦେଲା । ମହାଜନ ଝିଅ ଭୁଣ୍ଡାରୁପେ ମହାଜନ ପୁଅର ନଖ, ଚୁଟି, ବାଳ, ଅଙ୍ଗ ଘୋଡ଼ା ଝୁରୁଣୀ ଲୁଚାଇ ରଖିଲା । ମହାଜନ ଖଲାସ ହୋଇ ନିଜ ରାଜ୍ୟକୁ ବାହାରିଲା ।

ମହାଜନ ଝିଅ ତାକୁ ଦଶ ଟଙ୍କାର ଖଣ୍ଡ ଜାହାଜ ଆଉ କେତେ ଧନ ଦେଇ ଦେଲା । ମହାଜନ ପୁଅ କହିଲା—ତୁମେ କାହିଁକି ମତେ ଏତେ ଧନ ଦେଉଚ ? ସେ କହିଲା—ଆଜିଠାରୁ ତୁମେ ମୋର ସଙ୍ଗାତ ହେଲ । ତୁମେ କେତେ ସମ୍ପତ୍ତି ଆଣିଥିଲ, ଖାଲିଠାରେ କମିଯିବ, ଏତିକ ନେଇ ଯାଇଥାଅ । ତୁମେ ଆଗେ ଯାଅ, ମୁଁ ଆଉ ଦିନେ ଦୁଇ ଦିନେ ଯିବି ।

ମହାଜନ ପୁଅ ଗଲା । ତା ପଛେ ପଛେ ମହାଜନ ଝିଅ ବାପ-ଘରକୁ ଯାଇ ପୁଣି ଶାଶୁଘର ଗଲା । ସେଇ କାଳୁ ତ ମଧୁଶଯ୍ୟା ବାକି ଅଛୁ, ପୁଅ ବୋହୂ ଏକାଠେଇଁ ହେବାରୁ ମଧୁଶଯ୍ୟା ଦିନ ସ୍ଥିର ହେଲା । ହେଲେ କଣ ହେବ, ଅଗ ବଧୂ ନ ମାଇଲେ ତ ମଧୁଶଯ୍ୟା ହୋଇ ପାରିବ ନାହିଁ । ତହୁଁ ମହାଜନ ପୁଅ ମହାଜନ ଝିଅକୁ କହିଲା—ମୁଁ ଅଗ ବଧୂ ନ ମାରିଲେ ମଧୁଶଯ୍ୟା ହୋଇ ପାରିବ ନାହିଁ । ମହାଜନ ଝିଅ କହିଲା—ହଁ, ମାରିବ ଯେ, ଅଗ ସେ ପେଡ଼ିଟି ଅଣ । ମହାଜନ ପୁଅ ପେଡ଼ି ଫିଟାଇ ଦେଖେ ତ, ସେଥିରେ ତାର ନଖ, ଚୁଡ଼ି, ବାଳ, ଆଉ ଘୋଡ଼ା ଖୁରୁପୀ ଅଛି । ଏସବୁ ଦେଖି ସେ ବାଉଳା ହୋଇ ପଚାରିଲା—ଏସବୁ ତୁମେ କାହୁଁ ପାଇଲ ? ଏହା ଶୁଣି ମହାଜନ ଝିଅ ବିଦେଶରେ ଯାହା ଘଟିଥିଲା, ସେ ସବୁ ତା ଆଗେ କହିଲା । ମହାଜନ ପୁଅ କହିଲା—ତୁମ ଯୋଗେ ତ ମୁଁ ଧନ ପ୍ରାଣ ପାଇଲି, ଆଉ ତୁମକୁ ମାରିବି କଣ ? ତା ବଦଳରେ ତୁମେ ମୋତେ ମାରିବାର କଥା ।

ମହାଜନ ଝିଅ କହିଲା—ତୁମେ ମୋର ସ୍ୱାମୀ, ମୁଁ ତୁମର ସ୍ତ୍ରୀ, କିଏ କାହାକୁ ମାରିବ ? ଇତିକି ବଧୂ ଅନୁଅ ତୁଟିଗଲା । ବଧୂ ମତେ ମଧୁଶଯ୍ୟା ହେଲା । ଦିହେଁ ଧନ ଦୌଲତ ଭୋଗ କରି ମହାସୁଖରେ ରହିଲେ ।



# ସଜଣା ଧୋବା

ଅଶ୍ରାପୁର ଗାଁରେ ସଜଣା ବୋଲି ଗୋଟେ ଧୋବା ଥିଲା । ଜଣା ଅଧିକେ ସେ ମଧ୍ୟ ସଜଣାଟେ । ସଜଣା ଫୁଲଟେ କାନରେ ନ ଖୋସିଲେ ପଦାକୁ ବାହାରେ ନାହିଁ, ପାନ ଖିଲେ ଗାଲରେ ନ ଜାକିଲେ ବାଆଁ ପର ହୋଇଯାଏ । ଧୋବଧାଉଳିଆ ଧଡ଼ି ଲୁଗା ଦିଖଣ୍ଡ ନ ହେଲେ ମନ ଶୁଖାଇ ଦିଏ । ଖାଇବା, ପିଇବା, ଶୋଇବା, ସବୁ କଥାରେ ସଜଣାର ସଜ୍ଜନ ଥାଏ । ତାର ମନ—କାମ ଦାମ କିଛି ନ କରି ଗୁଣ୍ଡୀ-ପୁଅ ଅନନ୍ତା ପରି ବସି ବସି ବେଳ ସଅଳେ ସୁଆଦ ଚକଟା ଦିଓଟି ଖାଇ ଖାଲି ଶୁଅନ୍ତା, ବସନ୍ତା, ଖେଳନ୍ତା । ଏଥିକି ସଜଣାର ଘରର ଅବସ୍ଥା—ଦି' ଦିନେ ବାସି ଓଳିକି ଦାନା ନ ଥାଏ । ପାଦ ନ ଚଳିଲେ ପେଟ ନ ଚଳେ । ଏଥିଯୋଗୁଁ ସଜଣା ଝକ୍ ମାରି କେତେ ଜଣ ଗାଁ ସାନ୍ତ-ଙ୍କର ଲୁଗା କେତେ ଖଣ୍ଡ ଧୋବ କରେ । ସେଇ କେତେ ଖଣ୍ଡ ଲୁଗା ପୁଣି ବାବୁ ବୋହି ପାରିବେ ନାହିଁ ବୋଲି ଗୋଟେ ଗଧ ପୋଷିଥାନ୍ତି । ସଜଣା ଲୁଗା ଦିବା ନବା ପାଇଁ ବାହାରିଲେ ସେଇ ଗଧରେ ଚଢ଼ି ବାହାରନ୍ତି । କେବଳ ତାର ସ୍ତ୍ରୀଟି ଉତ୍ତମ ଲୋକ ବୋଲି ତାର ଘର କୌଣସି ପ୍ରକାରେ ଚଳିଯାଏ, ନ ହେଲେ କେତେ ଦିନୁଁ ବାବୁଙ୍କ ହାଡ଼ ଗୋହିରିରେ ପଡ଼ନ୍ତାଣି ।

ଏଇପରି କେତେ ଦିନ ଟିବା ପରେ ଥରେ ଗୋଟେ ବଡ଼ ଝଡ଼ି ହେଲା । କେହି ଦୁଆଡ଼େ ବାହାରି ପାରିଲେ ନାହିଁ । ଇମିତି ତେର ଦିନ କାଳ ଉପାସ ବଡ଼ ଦୁର୍ନୟ କଲା । ସଜଣାକୁ ଅଧ ପଇସା ପନ ନ ମିଳେ । ଏଣିକି ବେଳେ ସଜଣାର ପିଲା କବିଲା ଦିନ ଦିନ ଲଙ୍ଘା ଉପାସରେ ପାଠୁ ପାଠୁ ହୋଇଗଲେ । ତେଣୁ ଟିକିଏ ଥମ୍ବିବାରୁ ଧୋବଣୀ କହିଲା—ହାୟରେ ! ପିଲା ଗୁଡ଼ାକ ତ ଛନ ଛନ

ଉପାସ କଲେଣି, ଆଉ ଶୁଣିଲେ ହେବ ? ଘରେ ମୁଁ ଛେଳଟି ଅଛି, ତାକୁ ନେଇ ହାଟରେ ବିକ; ଟେବେ ଟିକେ ପାଣି ସାଉ ଦେବ ହେଲେ ଟୋକା ପାଣି ଜଳିବେ।

ସଉକା ସ୍ତ୍ରୀ ଶୁଣି କହିଲା—ଖାଲି କଣ କହି ଦେବା କଥା ହେଲା କି ? ହାଟ କଣ ପାଖରେ ବାଟ ହେଇଛି ଯେ ଧାଇଁ ଯାଇ ଛେଳିଟା ବିକି ଦେଇ ଆସିବ ? ଟିକିଏ ନୁହେ କି କିଛିଏ ନୁହେ ଛଅ କୋଶ ବାଟ, ଏତେ ବାଟ ଯିବା କଣ ସହଜ କଥା ? ଧୋବଣୀ କହିଲା—ତେବେ କଣ ପିଲାଏ ମରିବେ ? ସଉକା ତଳକୁ ଉପରକୁ ଚାହିଁଲା, ଭାବିଲା—ସତେ, ସ୍ତ୍ରୀ ନ କଲେ ପିଲେ ନିଶ୍ଚେ ମରିବେ। ପଛକୁ ବାଧ୍ୟ ହୋଇ କହିଲା—ହଉ ଯିବ। ଯିବ ଯେ, ମକାଳୁ ଗଣ୍ଡେ କଣ ଖାଇଲେ ତ ଯିବ ? ଗଣ୍ଡେ କଣ ଖାଇବାକୁ କରିଦେବୁ, ବାଟକୁ ପାନଗୁଆ ଟିକିଏ ଆଣିଦେବୁ, ତେବେ ଯାଇ ଯିବ। ଧୋବଣୀ କହିଲା—ହଉ, ମୁଁ ସ୍ତ୍ରୀ ଯିମିତି ସିମିତି କରିଦେବ। ସଉକା ଦେଖିଲା ଯେ—ନିଶ୍ଚେ ହାଟକୁ ଯିବାକୁ ପଡ଼ିଲାଣି, ତେବେ କିମିତି ଯିବ ? ରାତି ଯାକ ତାକୁ ଏଇ ଚିନ୍ତା ଘାଣ୍ଟିଲା। ବଡ଼ି ପାହିଲା, ସଉକା ହାଟକୁ ଯିବ ବୋଲି ସହଳ ସାଳ ଉଠି ଅଗ ଗାଧୁଆ ପାଧୁଆଟେ କରି ପକାଇଲା। ତା ପରେ ଜଳଖିଆ ଗଣ୍ଡେ ଖାଇ ପାନ ତବ ସଜାଡ଼ିଲା। ଭାବିଲା—ଯେତ ତ ସବୁ ହେଲା, ଏବେ ଯିବ କିମିତି ? ଗଧରେ ନ ଗଲେ ତ ଚାଲି ଯାଇ ପାରିବ ନାହିଁ। ପୁଣି ମୁଁ ଗଧରେ ଗଲେ ଛେଳିଟା ବା କିମିତି ନିବ ! ଏଇପରି ଅନେକ ଭାବ ଭାବି ପଛକୁ ଗୋଟେ ବୁଦ୍ଧି ପାଇଲା। ଭାବି ଠିକ୍ କଲା—ଛେଳିକି ଗଧ ଲାଞ୍ଜରେ ବାନ୍ଧିଦେଇ ଛେଳି ବେକରେ ଗୋଟେ ଘଣ୍ଟି ବାନ୍ଧି ଦେଲେ ଗଧ ଚାଲିଲେ ତ ଛେଳି ନିଶ୍ଚେ ଚାଲିବ, ଛେଳି ଚାଲିଲେ ତ ଘଣ୍ଟି ନିଶ୍ଚେ ବାଜିବ। ସେହି ଘଣ୍ଟି ବାଜୁଥିବା ତକ ସାଙ୍ଗରେ ଛେଳି ଆସୁଥିବା କଥା ମୁଁ ଜାଣି ପାରୁଥିବ। ଏଇ ବୁଦ୍ଧି ପାଇ ଛେଳି ବେକରେ ଘଣ୍ଟି

ବାଉଁଶ କଣ୍ଟାଳେ ଜିନ୍ଦରେ ଦେଲା । ତାପରେ ଶିଳେ ଘାଟ ଚୋଡ଼ାଇ ବାଡ଼ି ଦେଇ ଉକ ମାହୁଳା କାକରେ ବାଢ଼ି ହୋଇ ଘେଞ୍ଚାକୁ କୁଣ୍ଠକାଳ୍ପ ମୁଣ୍ଡରେ ଠେକାଠେ ଦେଇ ସଜ୍ଜା ଗଧରେ ଚଢ଼ି ଛେଳି ବାଳ ବାନ୍ଧିଲା । ଗଧ ଯିମିତ ଗ୍ରିଲେ, ତାହା ତ ସମସ୍ତଙ୍କୁ ଜଣା । ଗଧ ପାଦ ଗଣି ଗଣି ଗୁଲୁଥାଏ, ଛେଳର ଘଣ୍ଟି ଠଣ୍ ଠଣ୍ ବାଜୁଥାଏ, ସଜ୍ଜା ଘାଟ ଗ୍ରୈବାଇ ଗ୍ରୈବାଇ ଚାଲୁଥାନ୍ତି ।

ଏଥି ମଧ୍ୟରେ ବାଟରେ ଗ୍ରୀ ଜଣ ଠକ ସଙ୍ଗାତ ଇମିତ ସେଣରେ ସଜ୍ଜାଙ୍କ ଆସିବାର ଦେଖି ପାଞ୍ଚିଲେ—ଭାଇ ! ଏ ଛେଳଟାକୁ କିମିତ ମାରି ନିଅନ୍ତେଇଁ ? ଜଣେ ଠକ କହିଲା—ଅଛ, ଛେଳି କଥା ମତେ ଲାଗିଲା । ଆଉ ଜଣେ ଠକ କହିଲା—ମୁଁ ଗଧଟାକୁ ମାରି ନେବି । ଆଉ ଜଣେ କହିଲା—ମୁଁ ଏହା ଦେହରୁ ସବୁ ଲୁଗାପଟା ତକ ମାରିନେବି । ଚତୁର୍ଥ ଜଣକ କହିଲା—ସମସ୍ତେ ତ ସବୁ ନେଲ, ମୋ ପାଇଁ ତ କିଛି ନାହିଁ, ମୁଁ ତେବେ ସ୍ତ୍ରୀ ଘରୁ କାଛ ଲୁଗାପଟା ମାରି ଅଣିବି । ଗ୍ରୀ ଠକ ଏହିପରି ପଣ କରି ଯେଝାମତେ ଯେଝା ବାଟ ଧଇଲେ ।

ପ୍ରଥମ ଠକ ଜଣେ ବାଟ ଅଗକୁ ଯାଇ ଗୋଟେ ଲଟିରେ ଲୁଚି ରହିଲା । ସଜ୍ଜା ଯିମିତ ତାକୁ ପାର ହୋଇଗଲା, ସେ ଯିମିତ ପଛେ ପଛେ ଯାଇ ଅଳ ଛେଳବେକରୁ ଘଣ୍ଟିଟି ଫିଟାଇ ଗଧ ଲାଞ୍ଜରେ ବାନ୍ଧିଦେଲା; ତାପରେ ଛେଳଟି ଫିଟାଇ ଛେଳିକି ଘେନି ଚମ୍ପଟ । ସଜ୍ଜା ତ ଗଧକୁ ପାହାରେ ପାହାରେ ଲଗାଉଛ, ଲାଞ୍ଜରୁ ଘଣ୍ଟି ତ ବାଜୁଛି, ଆଉ ସଜ୍ଜାଙ୍କୁ କାହିଁକି ସନ୍ଦେହ ହେବ ? ଘଣ୍ଟି ନ ବାଜୁଥିଲେ ସିନା ସଜ୍ଜା ପଛକୁ ଗ୍ରହାନ୍ତା, ଘଣ୍ଟି ତ ବାଜୁଛୁ ଆଉ କାହିଁକି ପଛକୁ ଚାହିଁବ ? ଏହିପରି କେତେ ବାଟ ଯିବା ପରେ ସଜ୍ଜାଙ୍କ ପରସ୍ତା ତଳକୁ ଦେଲା । ସେ ଗଧରୁ ଓହ୍ଲାଇ ଦେଖେ ତ, ଛେଳି ନାହିଁ । ସେ ଆଉ ପରସ୍ତା କରିବ କଣ, ସେଇଠାରେଇଁ ବସି କାନ୍ଦିଲା ।

ସଜ୍ଜା ବସି କାନ୍ଦୁଥାଏ, ଏହିସମୟରେ ଦ୍ୱିତୀୟ ଠକ ବ୍ରାହ୍ମଣର ଭେକ ଧରି ଆସି ପହଞ୍ଚିଗଲା। କିଛି ନ ଜାଣିଲା ପରି ପଚାରିଲା—କିରେ ବାପା! କାହିଁକି କାନ୍ଦୁଛୁ? ସଜ୍ଜା କାନ୍ଦି କାନ୍ଦି ଛେଳିଟିକୁ କିପରି ଆଣିଥିଲା, କାହିଁପାଇଁ ଆଣିଥିଲା, ସେ ସବୁ କଥା କହିଲା। ଠକ ମିଛଟାରେ ବଡ଼ ବ୍ୟସ୍ତ ହେଲା। ତାପରେ କହିଲା—ମୁଁ ଆସୁ ଆସୁ ବାଟରେ ଦେଖିଲି ଗୋଟେ ଲୋକ ଗୋଟେ କାଇଁଚ ଛେଳି ଭିଡ଼ି ଭିଡ଼ି ନେଉଛି। ସେ ଛେଳି ତୋର ନୁହେଁ ତ? ସଜ୍ଜା କହିଲା—ହିଁ-ହିଁ, ମୋର ତ ସେ କାଇଁଚିଆ ଛେଳିଟା। ତୁମେ ତାକୁ କେଉଁଠି ଦେଖିଲ?

ଠକ କହିଲା—ସେ ବାଟ ଦ କୋଶ ଚାଲିଯିବଣି। ଓଃ, ସେ ଚଣ୍ଡାଳ କଣ କଲା? ତାକୁ ଗୋଡ଼ାଇ କରିବାକୁ ଆଉ ପାଦ ମିଳିଲା ନାହିଁ ଯେ ଏଇ ଗରିବର ଛେଳିଟା ନେଇଗଲା। ଅଚ୍ଛା, ତୁ ଆଉ ବ୍ୟସ୍ତ ହେନା, ତାକୁ ଯିମିତି ସିମିତି ଧରିବା। ଏହା ଶୁଣି ସଜ୍ଜାର ଟିକିଏ ଦମ୍ଭ ଆସିଲା। ସଜ୍ଜା କହିଲା—ଭଲା ମୋ ପାଇଁ ଟିକିଏ ପରିଶ୍ରମ କର! ଠକ କହିଲା—ଆରେ ପର ଲାଗି ତ ଏ ଦେହ ଗଢ଼ା, ତୁ ଆଉ କହିବୁ କଣ? ମୁଁ ତ ମନକୁ ଯାଉଥାନ୍ତି। ଅଚ୍ଛା, ହଉ, ହଉ, ତୁ ଏହିଠାରେ ବସିଥା, ମୁଁ ତାକୁ ଅଖି ପିଛୁଳାକେ ଧରି ଆଣୁଛି। ଏହା କହି ଦ୍ୱିତୀୟ ଠକ ଗଧରେ ଚଢ଼ି ଛେଳି ଖୋଜି ବାହାରିଲା। ଗଲା ଯେ ଗଲା, ଆଉ ଫେରିଲା ନାହିଁ। ସଜ୍ଜା ବସି ବସି ଚାହିଁ ଚାହିଁ ପଛକୁ ଗଧ ଖୋଜିବାକୁ ବାହାରିଲା।

ସଜ୍ଜା ଠକକୁ ଖୋଜୁ ଖୋଜୁ ଆଉ ଗୋଟେ ଠକକୁ ଦେଖିଲା। ସେ ଠକ ଗୋଟେ କୂଅ ଉପରେ ବସି କାନ୍ଦୁଛି। ସଜ୍ଜା କୂଅ ପାଖେ ପହଞ୍ଚି ତାକୁ ପଚାରିଲା—କିରେ ଭାଇ! ତୁ କିଆଁ କାନ୍ଦୁଚୁ? ଠକ କହିଲା—ଭାଇ, କଣ କହିବି? ମୋର କପାଳ ଫାଟିଛି। ଜମିଦାର

ସାନ୍ତଙ୍କର ହାତରେ ଟଙ୍କାର ଥଳିଟିଏ ଧରି ଆସୁଥିଲି, ଏ କୂଅଟା ଦେଖି ଏଥିରେ କେତେ ପାଣି ଅଛି ବୋଲି ଚାହିଁ ଦେଖୁ ଦେଲ ଥଳିଟି କାନ୍ଧରୁ କୂଅଭିତରେ ପଡ଼ିଗଲା । ଆଜି ଖଜଣା ଦାଖଲ ତାରିଖ । କଚେରିରେ ସେ ଟଙ୍କା ଦାଖଲ ହୋଇଥାନ୍ତା । ଏବେ ସେ କୂଅ ଭିତରେ ପଡ଼ିଲା । ମୁଁ କଣ କରିବି । ଟଙ୍କା ଦାଖଲ ନ ହେଲେ ଜମିଦାର ମୋ ବଂଶବର୍ଗ ମାରିଦେବ । ମୁଁ ହେଲେ କୂଅରେ ବୁଡ଼ି ଜାଣି-ଥାନ୍ତି, ତେବେ ଅବା ବୁଡ଼ି ଖୋଜିଥାନ୍ତି । କିଏ ଯେବେ ଥଳିଟି କାଢ଼ି ଦିଅନ୍ତା, ତେବେ ତାକୁ ଶହେ ଟଙ୍କା ଦିଅନ୍ତି । ଭାଇ ! ତତେ କୂଅ ବୁଡ଼ି ଆସେ କି ?

ସଉକୀ ଶହେ ଟଙ୍କା ଲୋଭରେ ଖୁସି ହୋଇ କହିଲେ—ଭାଇ, ମୋ ପାଖରେ ତ ଗାମୁଛା ନାହିଁ, କଣ ପିନ୍ଧି ବୁଡ଼ିବି ? ନ ହେଲେ ଏକା ବୁଡ଼ାକେ କାଢ଼ି ଦିଅନ୍ତି । ଠକ କହିଲା—ମୋର ତ ଏ ଗାମୁଛା ଖଣ୍ଡ ଅଛି, ଏହାକୁ ପିନ୍ଧିଲେ ହେବ ନାହିଁ ? ସଉକୀ କହିଲେ—ହଁ, ହେବ ନାହିଁ କାହିଁକି ? ତାପରେ ଠକ ତା ଚିରା ଗାମୁଛା ଖଣ୍ଡ ତାକୁ ବଢ଼ାଇ ଦେବାରୁ ସେ ସେଖଣ୍ଡ ପିନ୍ଧି ଲୁଗା ଦିଖଣ୍ଡି ଗୁଡ଼େଇ ଭୁଡ଼େଇ ପୋଟଳାଟିଏ କରି କୂଅ ପାହାଚରେ ରଖି ଦେଇ କୂଅରେ ପଶି ବୁଡ଼ିଲେ । ଏଣେ ଠକ ତା ଲୁଗା ଦିଖଣ୍ଡି କାଖରେ ଜାକି ଚମ୍ପଟ ! ସଉକୀ ଥରକୁଥର ଟଙ୍କା ଲୋଭରେ ବୁଡ଼ୁଥାଏ । ଟଙ୍କା ଫଙ୍କା କିଛି ପାଇଲେ ନାହିଁ । ପଛକୁ ନାକରୁ ସିଂଘାଣି ବାହାରିଲା, ବରଷା ପାଣି ପରି ଶୀତରେ ଦାନ୍ତ ଥରିଲା । ଆଉ କୂଅ ଭିତରେ ସମ୍ଭାଳି ହେଲା ନାହିଁ । ଜୀବନ କଲବଲରେ କୂଅରୁ ଉପରକୁ ପଳାଇ ଆସିଲେ । ଉପରେ ଆସି ଦେଖନ୍ତି ତ, ସେ ଲୋକ ନାହିଁ କି ଲୁଗା ଦି ଖଣ୍ଡି ନାହିଁ । ଆଉ ଉପାୟ ନାହିଁ । ଦେଖୁ ଦେଖୁ ତାକୁ ଗୋଟେ ଶକ୍ତ ଜର ହୋଇଗଲା । ଥରେ ଜରରେ ଶୀତ କମ୍ପ ଯୋଗୁଁ ଥରି ଯାଉଥାଏ । ସେହିଠାରେ ବସି 'ଉଃହୋ, ମାଲୋ !' ହେଉଥାଏ, ଆଉ ଉପାୟ ନାହିଁ ।

କିଛି ସମୟ ପରେ ଚତୁର୍ଥ ଠକ ସେଠାରେ ଆସି ପହଞ୍ଚିଲା । ସେ ସଜ୍ଜନଙ୍କ ପଚାରିଲା—ହାଁ ବାପା ! ତୁ ଏ ? ଏଠାରେ ଇମିତ ଅବସ୍ଥାରେ କାହିଁକି ପଡ଼ିଛୁ ? ସଜ୍ଜନ ଅତି କଷ୍ଟରେ ସବୁ କଥା ତା ଆଗେ କହିଲା । ଠକ ସବୁ ଶୁଣିସାରି ମିଛରେ ବଡ଼ ଦୁଃଖ କରି କହିଲା—ହଉ, ସେ ଯାହା ତ ହେଲା, ହେଲା । ତୁ ଥିଲେ ପୁଣି କେତେ ଜିନିସ ମିଳିବ । ଏବେ ଜୀବନ କିମିତି ରହିବ, ଆଗ ସେ ଉପାୟ କର । ତେବେ ମୋ ସଙ୍ଗେ ଗୋଟିଏ ଗୋଟିଏ ଗୁଲ, ମୁଁ ତୋ ଘରେ ତୋତେ ଛାଡ଼ି ଦେଇ ଆସିବି । ସଜ୍ଜନ କହିଲା—ମୁଁ କିମିତି ଯିବି ? ଶୀତରେ ତ ଦେହ ଥରୁଛି, ମନେ ଶୁଝିଲା ଲୁଗା ଖଣ୍ଡେ ଦିଅନ୍ତ କି ମୁଁ ଘୋଡ଼େଇ ଘାଡ଼େଇ ହୋଇ ଟିକିଏ ଦମ୍ଭ ପାଇନ୍ତେ, ତୁମ୍ଭ ସାଙ୍ଗେ ଅବା ଗୋଟିଏ ଗୋଟିଏ ଯାନ୍ତି । ଠକ କହିଲା—ଅରେ ଭାଇ ! ମୋ ପାଖରେ ଲୁଗା ଥିଲେ ତୁ କହିବା ଯାଏ ଯାଆନ୍ତା ? ମୋ ପାଖରେ ତ ଲୁଗା ନାହିଁ, କଣ କରିବା ? ମୋ ଘର ହେଲେ ପାଖ ହୋଇଥାନ୍ତା, ତେବେ ଅବା ଘରକୁ ଯାଇ ଘରୁ ଦିଖଣ୍ଡ ଖଣ୍ଡେ ଲୁଗା ଆଣି ଦିଅନ୍ତି । ତା ମଧ୍ୟ ନୁହେ । ସଜ୍ଜନ କହିଲା—ନାହିଁ ନାହିଁ, ତୁମ ଘର ବହୁତ ବାଟ, ସେ କଥା ହୋଇ ପାରିବ ନାହିଁ । ମୋ ଘର ଅଳ୍ପ ବାଟ, ଯେବେ ଦୟା କରି ମୋ ଭାର୍ଯ୍ୟା ପାଖରୁ ଲୁଗା ଦିଖଣ୍ଡି ଖଣ୍ଡେ ଆଣି ପାରନ୍ତ, ତେବେ ଜୀବନଟା ରହିଯାନ୍ତା । ଠକ ତ ସେଇ କଥା ଖୋଜୁଥିଲା, ସଜ୍ଜନ ତ ତାହା କହିଦେଲା । ତେଣୁ ସେ କହିଲା—ଯା କଣ ହୁଏ ନାହିଁ ? କାହାର ସମୟ ଅସମୟ ନାହିଁ, ମଣିଷକୁ ମଣିଷ ଅଣ୍ଡା, ଯିବି ନାହିଁ କିଆଁ ? ତେବେ ତୁମ ଭାର୍ଯ୍ୟା ମୋତେ ବିଶ୍ୱାସ କଲେ ତ ?

ସଜ୍ଜନ କହିଲା—ତୁମେ ମୋର ଏ ଉଜ୍ଜଳ ଅଥ ମାଳଟା ମୋ ହାତରୁ ଫିଟାଇ ନେଇ ତାକୁ ଦେଖାଇଲେ ତାର ବିଶ୍ୱାସ ହେବ । ଠକ କହିଲା, ତେବେ ଦେ, ମୁଁ ଯାଏଁ । ସଜ୍ଜନ ଉଜ୍ଜଳ ଅଥ ମାଳଟି ଠକକୁ

ଦେବାରେ ଠକ ବଣିକଙ୍କ ହାତରେ ମଜି ସଜ୍ଜନୀ ଘରକୁ ଗଲି । ସେଠାରେ ପହଞ୍ଚି ଅଙ୍ଗୁଠିଅ ଦେଖାଇ କ୍ଷମାପ୍ରାର୍ଥନା କରି ପାଞ୍ଚ ସାତ ଖଣ୍ଡ ଟି ତମ୍ବ ଟ ବାନ୍ଧି । ତେବେଣେ ସଜ୍ଜନୀ ଶୀତରେ ଥରଥର ଗୃହଁ ଗୃହଁ ଦାଡ଼ି ବର୍ଷେ ପଛରୁ ନିରାଶ ହୋଇ ଘଷ୍ଟୁର ଘଷ୍ଟୁର ସାତ ପହରକୁ ଘରେ ପହଞ୍ଚିଲା । ତା ସ୍ତ୍ରୀ ସଜ୍ଜନୀର ସବୁ ଦୁର୍ଦ୍ଦଶା ଶୁଣି ବୁଢ଼ୀ କୋଡ଼ ବଗୁଡ଼ି ହୋଇ କାନ୍ଦ ବୋବାଇ ନ୍ୟାଳ ଅଦର ରହିଲା । ସେହି ଦିନଠାରୁ ସଜ୍ଜନୀର ସବୁ ସଜ୍ଜନ ଭାଙ୍ଗିଗଲା । ତେବେଣେ ଗୃହ ଠକ ଏକାଠେଇଁ ହୋଇ ନିଜ ନିଜ ବଡ଼ପଣିଆ କହିହେଲେ । ତାପରେ ଛେଳାଟି ମାରି ସମା-ଘୋଟ ମଉଜଚଟେ କରି ସେ ଦିନକ କାମ ତୁଠାଇ ଦେଲେ ।

ସଂସାରର ହାଲ ଏହିପରି ।



# ସୁନା ଗଣ୍ଠି

କଡ଼ାକଡ଼ ରାଜ୍ୟରେ ଧଡ଼ାଧଡ଼ ସିଂହ ବୋଲି ଜଣେ ରଜା ଥିଲେ । ରଜାଙ୍କୁ ଚାହିଁ ମଧ ପାନ ମନ୍ତ୍ରୀ ସବୁ ଜୁଟିଥାନ୍ତି । ପ୍ରକୃତରେ ଧଡ଼ାଧଡ଼ ସିଂହ ରାଜକାର୍ଯ୍ୟ ଧଡ଼ାଧଡ଼ ଚଳାଇ ଦିଅନ୍ତି । ଏଇଥି ଯୋଗୁଁ କଡ଼ାକଡ଼ ରାଜ୍ୟରେ ଚୋର ଡକାୟତ କିଛି ଲୁଚି ରହେ ନାହିଁ । ସେ ରାଜ୍ୟରେ ଚୁଇଁ ଛୁଞ୍ଚା ବୋଲି ଗୋଟେ ଭଣ୍ଡାରି ଥିଲା । ସେ ଲୋକଟା ଯିମିତି ବୁଧିଆ, ସିମିତି ବାହାପିଆ । ସେ ଆଗ ରଜାଘରେ ଖଟଣୀ ସେବକ ଚାକିରି କରୁଥିଲା । ହେଲେ କଣ ହେବ, ଧଡ଼ାଧଡ଼ ସିଂହ ଭଳିଆ ରଜା ପାଖରେ ଏଭଳି ଫିସାଦିଆ କେତେ ଦିନ ରହି ପାରିବ ? ତାର ଫିସାଦ ଯୋଗୁଁ ରଜା ତାକୁ ଚାକିରିରୁ ବାହାର କରି ଦେଲେ । ଚୁଇଁ ଏଥିରେ ନିଜ ଦୋଷ ନ ବୁଝି ରଜାଙ୍କ ଉପରେ ରାଗ ରଖିଲା । ସାମାନ୍ୟ ଭଣ୍ଡାରିଟେ ଅବା ରଜାଙ୍କର କଣ କରି ପାରିବ ? ସେ ଆଉ କିଛି ବାଟ ନ ପାଇ ଖାଲି ଚୋରି ଡକାୟତି କରିବାରେ ଲାଗିଲା । କେତେ ଥର ମଧ ଚୋରି କଲା । କିନ୍ତୁ ଚୁଇଁ ବଡ଼ ଚତୁର । ତାକୁ କେହି ଧରି ପାରନ୍ତି ନାହିଁ । ସେ ଯେ ନିଜ ପେଟ ପୋଷିବାକୁ ଚୋରି କରେ, ତା ମଧ ନୁହେଁ, ସେ ଯାହା ଚୋରାଇ ଥାଏ, ତାହା ସବୁ ଦୁଃଖୀ ରଙ୍କୀମାନଙ୍କୁ ବାଣ୍ଟି ଦିଏ । ତାର ତ ମନ ଖାଲି ରଜାକୁ ହଇରାଣ କରିବା, ସେ କାହିଁକି ଅନ୍ୟ କଥା କରନ୍ତା ? ରାଜ୍ୟରେ ଏହିପରି ଅନେକ ଚୋରି ହେଲା । କେହି ଚୁଇଁକୁ ଧରି ନ ପାରିବାରୁ ରଜା ବଡ଼ ବ୍ୟସ୍ତ ହେଲେ । ତାଙ୍କ ପୁଲିସି ପହରାବାଲାଙ୍କ ଉପରେ ଭାରି ରାଗି କଡ଼ା ହୁକୁମ ଦେଲେ ।

ଜଗୁଆଳମାନେ ଜାଣିଲେ—ଏଥିକି ଚୋରକୁ ଧରି ନ ପାରିଲେ ଚାକିରି ଖଣ୍ଡିମାନ ତ ଯିବ, ତା ଛଡ଼ା ଆଉରି କିଛି ଅଧିକ ଦଣ୍ଡ ହେବ । ଏଇ ଭୟରେ ପୁଲିସି ପହରାବାଲାମାନେ ନ ଖାଇ ନ ପିଇ ରାତି ଅନିଦ୍ରା

ହୋଇ ସେଠାଁ ଝଙ୍କ ଖାଞ୍ଜରେ ଚୋରକୁ ଜଗିଲେ । ଶାହ୍ ଏତେ ଲୋକ ଜଗିଲେ, କିନ୍ତୁ ଅଜ ଯାଏ କିଏ ଧରିଛି ? ଚୋରଟିଏ ଧରାଇ ରାଜାଙ୍କ ସମ୍ମୁଖକୁ ଅଣିଲେ । ଅସାଧ୍ୟ ଚୋର ଧରା ପଡ଼ିବାର ଖବର ପାଇ ରଜା ସବୁ କାମ ଛାଡ଼ି ଦେଇ ଅଗ ତାର ମକଦ୍ଦମା ବିଚାର କରି ବସିଲେ । ବିଚାର ବେଳକୁ ଯେତେ ପ୍ରମାଣ ଲୋକ ଜମା ହୋଇଥାନ୍ତି । ଚୋରଙ୍କୁ ହାତକଡ଼ି ପକାଇ ରଜାଙ୍କ ଆଗରେ ଠିଆ କରିବାରେ ରଜା ପଚାରିଲେ—କିରେ ! ଏ ମାଇ ତୁଇ ଚୋରି କରିଚୁ ତ ? ଚୋର କହିଲା—ଧର୍ମାବତାର ! ଧରା ପଡ଼ିଲଣି ଯେତେବେଳେ, ଆଉ ନ ମାନିବ କାହିଁକି ? ଅଜ୍ଞ, ତୋର ଚୋରି କରିବାର କାରଣ କଣ ? ଚୋର କହିଲା—ମୁଁ ଯେ ଚୋରି କରି ପେଟ ପୋଷେ, ସୁଆ ନୁହେ । ମୁଁ ଯାହା ଚୋରି କରେ ସେ ସବୁ ଦୁଃଖୀ ରଙ୍କୀଙ୍କୁ ବାଣ୍ଟି ଦିଏ । ରଜା ପୁଣି ପଚାରିଲେ—ଅଜ୍ଞ, ତୁ ଏଇ ଥରକ ଚୋରି କରିଚୁ ନା ଅଉ କେତେ ଥର କରିଚୁ ? ଚୋର କହିଲା—ଅଜ୍ଞ ! ଛାମୁଙ୍କ ଗୁହାରି ଛଡ଼ିଲା ଦିନୁଁ ବହୁତ ଚୋରି କରିଚି ।

ରଜା କହିଲେ—ତେବେ ତୁ ଗୁରୁତର ଦୋଷ କରିଚୁ, ଏଥିକି ଶୂଳୀ ଦଣ୍ଡ ଦିଆଯିବ । ଚୋର କହିଲା—ଏଥିକି ଯେବେ ଶୂଳୀ ଦଣ୍ଡ ହେଲା, ତେବେ ହଜୁର, ମୁଁ ତ ଛାମୁ ହାତୁଡ଼େ ପଡ଼ିଚି, ମୋର ଗତି କଣ ଅଛି ? ତେବେ ମୋର ତ ମରିବା କଥା ଠିକ୍ ହେଲା । ମୁଁ ଛାମୁଙ୍କର ପ୍ରଜା, ଛାମୁଙ୍କ ଅନ୍ନ ଜଳରେ ବଢ଼ିଚି, ସେଥିପାଇଁ ମରିବା ଆଗରୁ ମୋର ଗୋଟିଏ କଥା ଜଣାଇବାର ଅଛି । ହୁକୁମ ହେଲେ ଜଣାଇବି । ରଜା କହିଲେ—ପରବାଏ ନାହିଁ, ଯାହା ଜଣାଇବୁ ଜଣା । ଚୋର କହିଲା—ସେ ଅଉ କିଛି ନୁହେ, ମୁଁ ଗୋଟିଏ ବିଦ୍ୟା ଜାଣିଥିଲି, ମୁଁ ମଲେ ସେ ବିଦ୍ୟା ବୁଡ଼ିଯିବ । କାହାକୁ ହେଲେ ଶିଖାଇ ଦେଇ ଯାଇଥାନ୍ତି । ରଜା କହିଲେ—ସେ କି ବିଦ୍ୟା ? ଚୋର କହିଲା—ମୁଁ ସୁନା ଗଛ କରି ଜାଣେ । ସେ ସୁନା ଗଛରେ ସୁନା ଫଳେ । ଜଣେ ସିଦ୍ଧ ପୁରୁଷଙ୍କୁ ବହୁତ ସେବା

ହେଁ ମୁଁ ସେ ବିଦ୍ୟା ଶିଖିଛି । ରାଜା ମନ୍ତ୍ରୀ ସମସ୍ତେ ଏ ଅଦ୍ଭୁତ କଥା ଶୁଣି କାବା ହେଲେ ।

ରାଜା କହିଲେ—କେତେ ଦିନରେ ଗଛ ହେବ ? ସେ କହିଲା—ଆଜ୍ଞା ! ଗୋଟିଏ ଦିନରେ । ରାଜା କହିଲେ—ତେବେ କାଲି ଦିନକ ତୋର ଶୂଳୀ ବନ୍ଦ ରହିଲା, ସୁନାଗଛ କରି ପାରିଲେ ଶୂଳୀ ଦିଆଯିବ । ଗୃହିଁ କହିଲା—ଆଜ ତ ହେବ ନାହିଁ, କାଲି ଭଲ ବାର ଅଛି, କାଲି ହେବ । ତେବେ ସେଥିପାଇଁ କେତେଗୁଡ଼ାଏ ଜିନିଷ ଦରକାର—ଜେଣି କିଛି ନୁହେଁ, ଟିକିଏ ଜମି, ସୁନା, ପୂଜାପାଇଁ ସାମାନ୍ୟ ଫୁଲ ଚନ୍ଦନ, ଅଉ ଭୋଗ କିଛି । ରଜା କହିଲେ—ଏସ୍ତା ତ ! ହଉ, ସବୁ ଦିଆଯିବ । ତୁ ଆମର ଆଗରେ କାଲି ସୁନାଗଛ କରି ଦେଖାଇବୁ ।

ଗୃହିଁ ତ୍ରୁ କରିଲା । ସେ ଦିନ ରାତିଟି ସେ ହାଜତରେ ରହିଲା । ତା ଅର ଦିନ ସକାଳୁ ଗୃହିଁକି ଅଣା ଗଲା । ସୁନାଗଛ ଦେଖିବାକୁ ବହୁତ ଲୋକ ଜମା ହେଲେ । ଗୃହିଁ ଫୁଲ ଚନ୍ଦନ ଭୋଗ ଦେଇ ନାକକାନ ଛୁଇଁ ତାଳି ମାରି ଅଗ ଘଣ୍ଟେ ଖଣ୍ଡେ ସେ ସୁନାକୁ ପୂଜା କଲା । ତାପରେ କିଛି ମାଟି ଅଣି ସେଠାରେ ଜମା କଲା । ସେ ମାଟି ଗୃହିପାଖେ ଅଡ଼େଇ ଥର ପ୍ରଦକ୍ଷିଣ କଲା । ତାପରେ ରଜାଙ୍କୁ କହିଲା—ଅଜ୍ଞା, ମୋ କାମ ସରିଲା, ଏବେ ସୁନା ପୋତିବାର କଥା । ମୁଁ ବହୁତ ଚୋରି କରିଛି, ମୁଁ ପୋତିଲେ ମୋଟେ ଗଛ ହେବ ନାହିଁ । ଏଣୁ କରି ଯେ ଜଣକ ଜମା ଚୋରି କରି ନାହିଁ, ସେହି ଲୋକ ପୋତିଲେ ସୁନା ଗଛ ହେବ । ଇମିତି ଜଣେ ଲୋକକୁ ବାଛି ଦିଅନ୍ତୁ । ରଜା ଏହା ଶୁଣି ଜଣେ ପାଇକକୁ କହିଲେ—ଅରେ ହେ ! ତୁ ଯେ ସୁନାଟିକି ପୋତି ଦେଲୁ । ପାଇକ ଭାବିଲା—ଚୋରି ସୁନା ପୋତିଲେ ଗଛ ହବ ନାହିଁ, ତେବେ ମୁଁ କାହିଁକି ଏ ସାହସ କରିବି ? ତହୁଁ ସେ ରଜାଙ୍କୁ କହିଲା—ମୁଁ ପେଟ

ବାଲକେ ବହୁତ ଟଙ୍କା କଦଳୀ ନେଇ ଅ ଚୋର କରଛୁ । ରଜା ତହୁଁ ପାଇକ ସର୍ଦ୍ଦାରକୁ କହିବାରୁ ସେ କହିଲେ,ଅଜ୍ଞା ! ମୋ ହାତରେ ହବ ନାହିଁ । ମୁଁ ଲୋକରେ ପଡ଼ ଭୁଲ ଗୃଲ ଥର ଘରେ ଛମୁଙ୍କ ବେଣ୍ଟ ଦୋଷଘରୁ ମାଡ ମାର୍ ନେଇଛୁ । ସେ ମନା କରିବାରୁ ରଜା ପାତ୍ରଙ୍କୁ କହିଲେ

ପାତ୍ରେ କହିଲେ—ଅଜ୍ଞା ! ଯେ ମୋ ଦେହରୁ ହୋଇ ପାରବ ନାହିଁ । ମୋ ହାତରେ ତ ଛମୁଙ୍କର ସମସ୍ତ ବେଉରପତ୍ର । ମଣିଷ ଏବେ କେତେ କ୍ଷମୀଯୁ। ରହିପାରେ ? ମୁଁ ସେଇ ମାୟାରେ ପଡ଼ ଛମୁଙ୍କ ଗନ୍ତାଘରୁ ଥରେ ଯୋଡ଼ଏ ପାଟ ଖଦ ଚୋର କରଛୁ । ତାପରେ ମନ୍ତ୍ରୀଙ୍କି ପୃଚ୍ଛା-ରିବାରେ ମନ୍ତ୍ରୀ କହିଲେ—ମୋ କଥା ସମସ୍ତଙ୍କୁ ବଳକା । କଏ ସିନା ବଳ ପାଇଲେ ଚୋର କରନ୍ତି, ମୁଁ ପିଲାଦନରୁ ଚୋର । ଖର୍ଚ୍ଚ କରିବାକୁ ବାପା ଟଙ୍କା ପଇସା ନ ଦେଲେ ମୁଁ ବେଳକାଳ ଜଣି ତାଙ୍କ ବାକ୍‌ସ ଫିଟାଇ ବହୁତ ବାର ଟଙ୍କା ଚୋର କରଛୁ । ରଜା ଏବେ କାହାକୁ କହିବେ ? ମନ୍ତ୍ରୀ କହିଲେ—ଆଉ କାହାକୁ କହିବା ଦରକାର ନାହିଁ । ସମସ୍ତଙ୍କ କଥା ଏହିପର । ଛମୁ ଛଡ଼ା ଆଉ କାହାର ହାତରେ ସୁନା ଗଛ ହୋଇ ପାରବ ନାହିଁ । ଛମୁ ନଜେ ସେ ସୁନାଟିକ ପୋତ ଦଅନ୍ତୁ ।

ଲୋକେ ଭର୍ତ୍ତି ହୋଇ ଏସବୁ ଦେଖୁଥାନ୍ତି । ରଜା ଦେଖିଲେ ଯେ, ଶେଷକୁ ତାଙ୍କର ଉପରେ ପଡ଼ିଲା । ଏଠାଇଁ ସତ କଥା ନ କହିଲେ ତ ନ ଚଳେ । ତହୁଁ ରଜା କହିଲେ—ମନ୍ତ୍ରୀ ! ମୋ ଦ୍ୱାରା ହୋଇ ପାରବ ନାହିଁ । ମୁଁ ପିଲାଦନେ ମାମାଙ୍କ ବାକ୍‌ସରୁ ବହୁତ ବାର ବହୁତ ଟଙ୍କା ନେଇଛୁ । ମନ୍ତ୍ରୀ କହିଲେ—ତେବେ କଣ ହେବ ? ରଜା କହିଲେ—ତେବେ ଏଠାରେ ଯେତେ ଲୋକ ଠିଆ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ଯେ ଚୋର କର ନ ଥିବ, ସେ ପୋତୁ, ଆମେ ତାକୁ ପୁରସ୍କାର ଦବୁ । ପଛକୁ ଗୋଟି ଗୋଟି ହୋଇ ପଳେଇ ଗଲେ, କେହି ମଙ୍ଗିଲେ ନାହିଁ । ରଜା କହିଲେ—ହଇରେ ଗୃଇଁ । ସୁନା ଗଛ ତ ହୋଇ ପାରବ ନାହିଁ ।

ଗୁଇଁ କହିଲା—ମୁଁ ହେଥିା ଦେଖି କହା ହେଲା ସବ । ରାଜକାଠାଗାର ଲୋକଙ୍କୁ ପଚାର ହେଲା, ଛତେ ନାହ ସତା କାହାରିକି ନାହିଁ, ସମସ୍ତେ ଚୋର—ଗାଦ ମନ୍ତ୍ରୀ ଚୋର । ପଛକୁ ଛମୁ ମଧ୍ୟ ଭଲ ଲୋକ ନୁହନ୍ତି, ଚୋର । ଅଉ ମୋର କେଉଁ ଦୋଷଟା ହେଲା ଯେ ମୁହିଁ ପାଇବି ଶୂଳୀ ? ଏ କଣ ନ୍ୟାୟ ବୁଝାମଣା ? ଯେବେ ଏ ଦୋଷରେ ଶୂଳୀ ପାଇବାର କଥା, ତେବେ ସମସ୍ତେ ପାନ୍ତୁ, ଖାଲି ମୁଁ କଅଁ ଶୂଳୀ ପାଇବି ?

ରଜା ଗୁଇଁର ଏ କଥା ଶୁଣି ଭାବିଲେ—ସତ କଥା; ନା, ଏହା କଲେ ଅନ୍ୟାୟ ହେବ । ତାପରେ କହିଲେ—ଗୁଇଁ ! ତୁ ବଡ଼ ବୁଦ୍ଧିଆ, ତୋ ବୁଦ୍ଧିରେ ଆମେ ସନ୍ତୁଷ୍ଟ ହୋଇ ଛାଡ଼ ଦେଲୁ ଅଉ ଅଜଠାରୁ ତୋତେ ଆମ ଏ ଗଡ଼ର କାର୍ଯ୍ୟୀ ପଦରେ ନିଯୁକ୍ତ କଲୁ ।

ଗୁଇଁର ଏ ବୁଦ୍ଧିକି ସମସ୍ତେ ଧନ୍ୟ ଧନ୍ୟ କହି ଘରକୁ ଗଲେ । ଗୁଇଁ ମଧ୍ୟ ରଜାଙ୍କୁ ଦଣ୍ଡ ପ୍ରଣାମ କରି ଘରକୁ ଗଲା । ସେଇ ଦିନଠାରୁ ଗୁଇଁ ନିଜ ବୁଦ୍ଧିରେ କାର୍ଯ୍ୟୀ ନାମ ପାଇ ମହାସୁଖରେ ରହିଲା ।

ବୁଦ୍ଧିରେ କଣ ହୋଇ ନ ପାରେ ?



## ମାର୍ କୌମୁଦୀକା ବାଟେ

ଉତ୍ତର ନଈକୂଳରେ ଝାଡ଼ବୋଲପୁର ବୋଲି ଗୋଟିଏ ଗାଁ ଥିଲା । ସେ ଗାଁର ଲୋକେ ଜମିବାଡ଼ି, ଠଙ୍କା ଉପାର୍ଜନ କରି ମହା ସୁଖରେ ଥାନ୍ତି । ସେ ଗାଁରେ ଅବୋଧ ପାଣି ବୋଲି ଜଣେ ବ୍ରାହ୍ମଣ ଥିଲେ । ଅବୋଧର ବିଷୟ ବାଡ଼ି ବହୁତ । ଘରେ ପୁଅ ଝିଅ ନାତି ନାତୁଣୀ ହୋଇ ଗାଣ୍ଡେ । ଅବୋଧ ପାଠ ଶାସ୍ତ୍ର କିଛି ପଢ଼ି ନ ଥିଲା । ହେଲେ କଣ ହେବ, ଲୋକ ଭଲ । ଅବୋଧର ଉତ୍ତରଭଗ ନଈକୂଳରେ ଖଣ୍ଡିଏ ଭଲ ବଗିଚା ଥାଏ । ସେ ରୋଜ ପାହାନ୍ତିଆରୁ ଅଗ ବଗିଚାକୁ ଯାଏ ।

ଦିନେ ବଗିଚାକୁ ଯାଇଛି, ଦେଖିଲା ଅର ପାରିରେ ଜଣେ ବାବାଜି ନଈ ପାର ହେବାକୁ ଏଣେ ତେଣେ ଚାହୁଁଛନ୍ତି । ଘାଟରେ ଡଙ୍ଗା ନାହିଁ କି ନାଉରୀ ନାହିଁ । ସେତେବେଳକୁ ନଈ ଭରାଭରି ପୂର ପାଣି । ସେଥିରେ ପୁଣି ଏମିତି ସୁଅ ହେଉଛି ଯେ ସାପମୁଣ୍ଡ କଟିଯିବ । ଅବୋଧ ଚାହିଁଥାଏ, ବାବାଜି କିମିତି ପାର ହେବେ । ଦେଖୁ ଦେଖୁ ବାବାଜି କଉପୀ ମାଡ଼ି ସେହି ବଢ଼ିଲା ନଈରେ ଚାଲି ଆସିଲେ । ସେଥିରେ ଗୋଡ଼ ବୁଡ଼ା ଓଦା ହେଲା ନାହିଁ । ଅବୋଧ ଏହା ଦେଖି କାବା ହୋଇଗଲା । ବାବାଜି ନଈ ଏ ପାଖରେ ପହଞ୍ଚିବାରୁ ଅବୋଧ ତାଙ୍କ ପାଖକୁ ଯାଇ ଲମ୍ବ ହୋଇ ଗୋଡ଼ତଳେ ପଡ଼ି କହିଲା—ବାବା ! ମତେ ଆପଣ ଦୀକ୍ଷା ଦିଅନ୍ତୁ । ଆପଣ ଯାହା କହିବେ, ମୁଁ ତାହା ନିଶ୍ଚୟ ପାଳିବି । ବାବାଜି କହିଲେ—ହେ ଭକ୍ତ ! ଯେବେ ତୋର ଦୀକ୍ଷା ନବାର କଥା, ତେବେ ସାଙ୍ଗେ ସାଙ୍ଗେ ଦୀକ୍ଷା ମିଳିବ ନାହିଁ । ଆଗ ଆମେ ଯାହା କହୁଛୁ, ତାହା କର, ତାପରେ ଦୀକ୍ଷା ଦିଆଯିବ ।

ଅବୋଧ କହିଲା—କଣ କରିବାକୁ ହେବ, କହନ୍ତୁ, ମୁଁ ଅବଶ୍ୟ ତାହା କରିବି । ବାବାଜି ପୁଣି କହିଲେ—ତୁ ତୋର ପିନ୍ଧିବା

ଲୁଗା ତଳେ ଦୁଇଖଣ୍ଡି କୌପୁନୀ ଛାଡ଼ି, ତାଙ୍କ ଲୁଗାପଟା ଫିଙ୍ଗିଦେ । ଆଉ ଘରକୁ ନ ଯାଇ ଏଠାରେ ମୁଁ ବୈରାଗୀ ହୋଇ ଯା । ତିନି ଦିନ ତିନି ରାତି ପରେ ମୁଁ ଯେଉଁଠାରେ ପହଞ୍ଚିବୁ, ସେଠାରେ ଅଟକି ଫେରିବା ପର୍ଯ୍ୟନ୍ତ ରହିବୁ । ସେତିକି ଦିନ ଭିକ ମାଗି ଏହି ଦୁଇଖଣ୍ଡି କୌପୁନୀରେ ଚଳୁଥିବୁ, ଆମେ ଆସିଲେ ଦୀକ୍ଷା ଦେବୁ । ବାବାଙ୍କ କଥା ଶୁଣି ଅବୋଧ ସନ୍ଧରେ ପଡ଼ିଲା । ଏଣେ ଘର ଲୋଭ ଛାଡ଼ି ପାରୁ ନ ଥାଏ, ତେଣେ ବାବାଜିଙ୍କ କଥା ଲଙ୍ଘି ପାରୁ ନ ଥାଏ । କିଛି ସମୟ ଏ ପାଖ ସେ ପାଖ ହୋଇ ପଛକୁ ବାବାଜିଙ୍କ କଥା କଲା । ଲୁଗା ଛାଡ଼ି କୌପୁନୀ ମାରି ପୂର୍ବମୁଖା ହୋଇ ବାହାରିଲା । ବାବାଜି ଅନ୍ୟ ଆଡ଼େ ଗଲେ । ଅବୋଧ ତିନି ଦିନ ତିନି ରାତି ଚାଲି ଚାଲି ଲେଉଟପୁର ମୁଣ୍ଡରେ ପହଞ୍ଚିଲା ।

ବାବାଜିଙ୍କ କଥା ଅନୁସାରେ ସେ ସେହିଠାରେ ଗୋଟିଏ ବରଗଛ-ମୂଳେ ରହିଲା । ଦିନବେଳାରେ ଏ ଗାଁ ସେ ଗାଁ ବୁଲି ଭିକ ମୁଠିଏ ଆଣି ଖିଆପିଆ କରି ସେ ବରଗଛ ମୂଳେ ଥାଏ । ଏମିତି କେତେ ଦିନ ଯିବାରେ ଲେଉଟପୁର ଗାଁଲୋକେ ଅବୋଧର କର୍ମାଦ୍ୟ ଚାଲିଚଳଣି ଦେଖି ତାକୁ ବଡ଼ ଭକ୍ତି କଲେ । ଅନେକ ଲୋକ ତା ପାଖରେ ଅନେକ ସମୟ ବସନ୍ତି । ହେଲେ କଣ ହେବ, ଅବୋଧ ଯେତିକି ଦରକାରି, ସେତିକି ଭିକ ଛଡ଼ା ଆଉ କାହାକୁ କିଛି ମାଗେ ନାହିଁ । ଏମିତି କେତେ ଦିନ ଚାଲିଗଲା । ଲେଉଟପୁର ଗାଁ ଲୋକେ ତାକୁ ଭାରି ଭଲ ପାଉଥାନ୍ତି । ଅବୋଧର କେହି ଶତ୍ରୁ ନ ଥାନ୍ତି । ହେଲେ କଣ ହବ, ଗୋଟେ ମୂଷା କିଛି ତା ସାଙ୍ଗେ ଲାଗିଲେ । ଅବୋଧର ପାଖେ, ନା ଶାଲ, ନା ଧାନ, ନା ଚାଉଳ, ନା ଦୁଧ, ନା ଘିଅ, କଣ ଅଛି ଯେ ଖାଇବ ? ହେଇ ହେଇ ସେ ଅଧିକା କୌପୁନୀ ଖଣ୍ଡ । ଲାଗି ଲାଗି ମୂଷା ସେଇ ଖଣ୍ଡ ଗୋଟେ କାଟେ । ଦିନେ ଦିନେ ବରଗଛର କୁ ଡାହିକ ବୋଇଲେ କୁ ଡାହିକ ନେଇ-ଯାଏ ।

ସେ ଅବୋଧ ପାଙ୍କେ ଇସିଡ଼ ଲଗିବାରୁ ଅବୋଧ ତାର ଦାନ୍ଦରେ ଶିଠଲ୍ ପଲାଇବାକୁ ବସିଲା । ଗାଁ ଲୋକେ ଯେବେ ଜାଣିଲେ, ଅବୋଧକୁ କହିଲେ—ଅରେ ଗୋଟେ ମୂଷା ସେମ୍ତି ପଲାଇବ ? ବଲେଇଟେ ବାନ୍ଧଦେଲେ ତ ମୂଷା କୁଆଡ଼େ ପଲାଇବେ । ଇଥିପାଇଁ ଏତେ ବ୍ୟସ୍ତ କଅଁ ? ଅବୋଧ ଏ କଥାରେ ବୋଧ ହୋଇ କହିଲା—ହଉ ତେବେ । ତାପରେ ଜଣେ ଲୋକ ଗୋଟେ ବଲେଇ ଅଣି ସେଠାରେ ବାନ୍ଧଦେଲା । ବଲ୍ଗିଡ଼ଟି ବନ୍ଧା ହେବାରେ ପଡ଼କୁ ସତ ଅଉ ମୂଷା ଅସିଲା ନାହିଁ । ମୂଷା ଜଞ୍ଜାଳ ସିନା ଗଲା, ଏଣେ ବଲେଇ ଜଞ୍ଜାଳ ତାକୁ ବଳିଲା । ବଲେଇ ଖାଇବାକୁ ତ ପୁଣି ମାଛ ଶୁଖୁଆ କି ଦୁଧ ଘିଅ ଇତ୍ୟାଦି ଦରକାର । ଅବୋଧ ବାବାଜିଟେ, ଏହା ସବୁ କାହୁଁ ପାଇବ ? ବାବାଜିଟେ ହୋଇ ମାଛ ଶୁଖୁଆ କାହାକୁ ମାଗିବ । ମାଛ ଶୁଖୁଆ ମାଗିଲେ ତେଲକୁ ଲୋକେ ବାଡ଼େଇବେ ସିନା ? ଗାଁ ଲୋକେ ଦୁଇ ଚାରି ଦିନ ବଲେଇ କଥା ବୁଝିଲେ, ତେଣିକି ଅଉ ବୁଝିଲେ ନାହିଁ । ତାପରେ ବଲେଇ ଚନ୍ତା ଅବୋଧ ଉପରେ ପଡ଼ିଲା । ସେଥିରେ ସେ ବଡ଼ ହଇରାଣ ହେଲା । ସେ ଦେଖିଲା ଯେ, ବଲେଇ ନ ରଖିଲେ ମୂଷା ମତେ ରଖାଇ ଦବ ନାହିଁ, ମୁଁ ପୁଣି ବଲେଇକି ସମ୍ଭାଳି ପାରିବ ନାହିଁ । ଏଣୁ ଏଠାରୁ ପଲାଇବା ଭଲ । ଏ କଥା ଯେବେ ଗାଁ ଲୋକେ ଜାଣିଲେ, ତହୁଁ ସେମାନେ କହିଲେ—ବଲେଇଟେ ପୋଷି ଯାରେ ପାରିବ ନାହିଁ ଯେ, ଏଥିପାଇଁ ପଲାଇବ ? ଦୁଧିଅଲ ଗାଈଟେ ବାନ୍ଧଦେଲେ ତ ବଲେଇର ଦୁଧ ଟୋପେ ଟୋପେ ହେଲେ କାମ ଶେଷ, ଏଥିକି ଏତେ ବ୍ୟସ୍ତ କଅଁ ?

ସେଇ କଥା ଅନୁସାରେ ଗୋଟେ ଦୁଧିଅଲ ଗାଈ ବନ୍ଧା ହେଲା । ପଡ଼କୁ ସତ ବଲେଇ କାମ ବେଶ୍ ଚଳିଲା । କିନ୍ତୁ ଗାଈ ଜଞ୍ଜାଳ ବଲେଇ ଜଞ୍ଜାଳକୁ ବଳକା ହେଲା । ସେଥିଯୋଗୁଁ ଅବୋଧ ମୁନି ପଲାଇବାକୁ ବାହାରିଲା । ଗାଁଲୋକେ ଏହା ଜାଣିପାରି ଗାଈ ପାଇଁ ଗୁହାଳ କରିଣ

ହୁଡ଼ୁଚ ଲଗି ଖଣ୍ଡେ ଜମି ଖଞ୍ଜିଦେଲେ । ଜମିରେ ତ ପୁଣି ମନକୁ ଫସଲ ହବ ନାହିଁ, ସେଥିପାଇଁ ଗୋଟେ ହଳଅ, ହଳେ ବଳଦ ଦରକାର । ତା ମଧ୍ୟ ହେଲା । ହଳଅ ବିନା ହଲ କ ଚାସ କରି ଫସଲ କରିବ, ପୁଣି କୁଣ୍ଡା କୁଡ଼ୁଚ, ସେଇ ଗୋଡ଼ାଣୀ କୁଟାଇବା ଅଉ ଗୁହାଳ ପୋଛିବା ପାଇଁ ତ ଜଣେ ମାଇପି ଲୋକ ଦରକାର । ଗାଁ ଲୋକେ ତାହା ମଧ୍ୟ ଖଞ୍ଜିଦେଲେ । ଏଣିକି ଅବୋଧର ଅଉ ଅଭାଅ କଣ ନାହିଁ । ମୁଷ୍ଠି ଦାଉ, ବଲେଇ ଜଞ୍ଜାଳ, ଗାଈ ଅଭୁଅ, ଏସବୁ ଛୁଟିଗଲା । ହଲ ଖଣ୍ଡିଏ ହେବାରୁ ହଲ ଗୁଲ ଦଉଟି ମଧ୍ୟ ଅବୋଧକୁ ଖାଇବାକୁ ମିଳଲା, ଅଉ ଭିଖ ମାଗିବାକୁ ପଡ଼ଲା ନାହିଁ । ଗାଈ ଠଉଁ ଯେଉଁ ଦୁଧ ମିଳେ, ସେଥିରୁ ବଲେଇ ଅବା କେତେ ଖାଇବ ? ସେଥିରୁ ପୋଷେ ପୋଷେ ମଧ୍ୟ ଅବୋଧକୁ ଖାଇବାକୁ ମିଳଲା । ସେଥିରେ ପୁଣି ଗୋଟେ ଗୃହକର, ଗୋଟେ ଗୃହକର୍ଣ୍ଣୀ ନଜର ହୋଇ ରହିଲା । ଦହ ମୁଣ୍ଡ, ହାତ ଗୋଡ଼ ବଥେଇଲେ ଗୃହକର୍ଣ୍ଣୀ ସାଙ୍ଗେ ସାଙ୍ଗେ ସେବା କରୁଥାଏ । ଅବୋଧ ଏଣିକି ଖାଇପିଇ ମହା ମଉଜରେ ରହିଲା । ଇମିତ ମଉଜରେ ରହିଲେ କ ଲୋକ ବୈରାଗୀ ହୋଇ ରହିପାରେ ? ଇମିତ କେତେ କାଳ ଗଲା ପରେ ଗୃହକର୍ଣ୍ଣୀ ଅଭ୍ରୁ ପୁଅଝିଅ ହୋଇ ଦୁଇଟି ହେଲେ । ଏଥିମଧ୍ୟରେ ଅବୋଧର ଅସ୍ଥ-ଆମଦାନୀ ମଧ୍ୟ ବଢ଼ି ଯାଇଛି । ବର୍ତ୍ତମାନ ସେ ଅବୋଧ ନାହିଁ—ଅବୋଧ ପ୍ରକୃତରେ ଅବୋଧ । ନ ହେଲେ ସେ ବାବାଜି ହୋଇ ପୁଣି କାହିଁକି ସଂସାରୀ ହୁଅନ୍ତା ? ଅବୋଧ ଏହିପରି ମହାସୁଖରେ ଥାଏ ।

ସମୟ ହୋଇ ଆସିବାରୁ ସେହି ଗୁରୁ ବାବାଜି ଅବୋଧକୁ ଦୀକ୍ଷା ଦେବା ପାଇଁ ସେଠାରେ ଆସି ପହଞ୍ଚିଲେ । ଗୁରୁ ଆସି ଦେଖନ୍ତି ତ—ଅବୋଧ ଅଉ ବୈରାଗୀ ନୁହେ, ସେ ପୁଣି ସଂସାରୀ ହୋଇ ମହା ଭୋଗରେ ରହିଲାଣି । ବାବାଜି ଏହା ଦେଖି ଅଉ ଦୀକ୍ଷା ଦେବେ କଣ ? ପଚାରିଲେ—କଉ ! ଏ କଣ ? ଅବୋଧ

କହନ୍ତି—"ସବ୍ କୌପୁଣୀକା ବାସ୍ତେ ।" ବାବାଙ୍କ କଥା ବୁଝି ପାରନ୍ତେ ନାହିଁ । ତାପରେ ଅବୋଧ କହନ୍ତି—"ଅପଣ ଯେଉଁ କୌପୁନୀ ଦେଇ-ଥିଲେ, ତାକୁ ମୂଷା ନେବାରୁ ମୂଷା ପାଇଁ ବିରାଡ଼ି,ପୁଣି ବିରାଡ଼ି ପାଇଁ ଗାଈ ରଖି ରଖି ମୁଁ ଏ ଅବସ୍ଥାରେ ପଡ଼ିଛି । କୌପୁନୀ ମୂଷା ନେଇ ନ ଥିଲେ ମୋର ଏ ଅବସ୍ଥା କାହିଁକି ହୋଇଥାନ୍ତା ? ସେଥିପାଇଁ କହୁଛି—'ସବ୍‌କୌପୁଣୀକା ବାସ୍ତେ' ।"

ଗୁରୁ ବାବାଜି ଏହା ଶୁଣି କହିଲେ—ବାବା ! ତୁମର ରକ୍ଷା ତୁମ ହାତରେ । ଆଉ ଦୀକ୍ଷା ନେବା ଦରକାର ନାହିଁ । ଅମେ ବିଦାୟ ହେଲୁ । ବାବାଜି ତ ଗଲେ, ଅବୋଧ ଏଣିକି ପୁରା ସଂସାରୀ ହୋଇ ରହିଲା । ଏଣିକି ବେଳେ ବେଳେ ଯେଉଁ ଗାଁବାଲା ସାହାଯ୍ୟ କରିଥିଲେ, ସେମାନଙ୍କ ସଙ୍ଗେ ଗଣ୍ଡଗୋଳ କରି ସେମାନଙ୍କ ନାମରେ ବହୁତ ମାଲିମକଦ୍ଦମା କଲା । ଏଥିରେ କି ଶାନ୍ତି ମିଳେ ?

ଏଥିପାଇଁ କଥା ଅଛି—ଜ୍ଞାନ ନ ହେଲେ ବାହାର ଆଡ଼ମ୍ବରରେ କେହି ବୈରାଗୀ ହୋଇ ନ ପାରେ ।



# କୁଣିଆକୁ ବାନ୍ଧି, ପେଙ୍ଗାକୁ ଆଟେଣି

ଛନିଅପୁରର ଚମକ ଦିନେ ତା ଶଶୁର ଘରକୁ ବାହାରିଲା । ଶଶୁର ଘର ଛନିଅପୁରରୁ ଟିକିଏ ଦୂର । ଯାଉଁ ଯାଉଁ ବାଟରେ ଟାଣ ଖରା ହୋଇଗଲା । ଶଶୁର ଘର ବାଟ ଛକିକୋଣ ଥାଏ, ବାଟରେ ଚମକର ଷଣ୍ଢୁ ମାନଙ୍କ ଦେଖା ହେଲା । ଷଣ୍ଢୁ ନାମ ପଣ୍ଡେ ଏ ବୋଲି ଅଉ ଗୋଟେ ଗାଁକୁ ଯାଉଥାଏ । ଅବେଳାରେ ବାଟରେ ଷଣ୍ଢୁ ସଙ୍ଗେ ଦେଖା ହବାରୁ ପଚାରିଲା—କିଏ ଷଣ୍ଢୁ ! ଏ ଖରାରେ କୁଆଡ଼େ ଚାଲିଛ ? ଚମକ କହିଲା—ଟିକିଏ ଶଶୁର ଘରକୁ ଯାଉଛି । ଚମକର କଥା ଶୁଣିଲା ପରେ ଷଣ୍ଢୁ ଦେଖିଲା, ବନ୍ଧୁ ଲୋକ, ଦିନ ବହୁତ ହେଲାଣି, ଟିକିଏ ଆଦର ନ କରି ଛାଡ଼ି ଦବାଟା ତ ଭଲ ହବ ନାହିଁ, ତହୁଁ କହିଲା—"ଷଣ୍ଢୁ ! ଦିନ ବହୁତ ହେଲାଣି, ଖରାଟା ଟାଣ ହେଉଛି, ଶଶୁର ଘରେ ପହଞ୍ଚୁ ପହଞ୍ଚୁ ବେଳ ବୁଡ଼ି ହୋଇଯିବ, ମୁଁ ତ ଗୋଟେ କାମରେ ଯାଉଛି, ତୁମେ ଆମ ଘରକୁ ଯାଅ, ଘରେ କାଞ୍ଜି ଅଛି, ଆମ ଘରେ ଗଣ୍ଡେ ଭାତ ଖାଇ ଯିବ ।" ଚମକ ଦେଖିଲା—ଷଣ୍ଢୁ ତ, ବହୁତ ଆଦର କରୁଛି, ହେଲା ଏବେ, କାଞ୍ଜି ହେଉ, ଶାଗ ହେଉ, ଗଣ୍ଡେ ଖାଇକରି ଗଲେ ମନ୍ଦ କଣ ? ସିଠଉଁ କହିଲା—ହେଉ ତେବେ, ତୁମେ ଯାଅ, ମୁଁ ଭାତ ଖାଇକରି ଯିବି । ଏହା କହି ଷଣ୍ଢୁ ଘରେ ପହଞ୍ଚିଲା । ଷଣ୍ଢୁର ସ୍ତ୍ରୀ ଚମକକୁ ଦେଖି କହିଲା—ଭଲ ହେଲା, କେତେ ଦିନରେ ତ ଆସିଚ, ଦିନ ତ ବହୁତ ହେଲାଣି, ଘିଅ ଅଛି, ଗଣ୍ଡେ ଭାତ ଖାଇକରି ଯିବ । ଚମକ ବୁଝିଲା—ଷଣ୍ଢୁ ସିନା କହିଥିଲା, କାଞ୍ଜି ଅଛି, ଖାଇକରିଯିବ, ତା ସ୍ତ୍ରୀକୁ ବୋଧହୁଏ କାଞ୍ଜି ଭାତ ଦବାକୁ ଲାଜ ମାଡ଼ୁଛି, ସିଥିପାଇଁ ଘିଅର କଥା କହିଲାଣି । ହଉ ହେଲା ଏବେ, ଟିକିଏ ଡେରି ସିନା ହବ, ଘିଅ ଆସିବା ଯାଏ ଯାଉ, ଭଲକରି ମୁଠେ ନ ଖାଇ କାହୁଁଘରେ କାଞ୍ଜି ପେଜ କଣ ଖାଇବ ? ଇମିତି ବିଚାରି ଚମକ ଷଣ୍ଢୁ

ଦିନେ ଦିନେ ବସ୍ତୁ ବସ୍ତୁ ଅସି ସନ୍ଧ୍ୟା ହେଲା, ଖାଇଛି ନାହିଁ କି ପିଅ ନାହିଁ, ଶୋଷରେ ଅନ୍ତରୁ ପାଣ୍ଡି ହେଲା । କେତେବେଳେ ଜଙ୍ଗଲରୁ ତାର ଷଣ୍ଢ ଅସି ହେଲା । ଷଣ୍ଢ ଘୋଷି ସିନା, ସେ ଅସି ବିଶ୍ୱନାଥଙ୍କ ବେଳକୁ ଗୋଡ଼ ଗୋଠ ଦେଇ ଅସି ପହଞ୍ଚିଲା, ସେତେବେଳେ ଯେବେ ବଳଦ ଦଉଡ଼ା ଛଡ଼ା ନ ବୁଝନ୍ତି, ତେବେ ସେ ଯୋଡ଼ାକ ବି ଅଜେ ଗୁଳିଯିବେ, ସ୍ତ୍ରୀ ବୋଲି ଗୁହାଳ ଅଡ଼କୁ ଗଲା, ଅଉ ଷଣ୍ଢ କଥା ବୁଝିବ କିଏ ? ସତକୁ ସତ ଗୁହାଳ ପାଖେ ପହଞ୍ଚିଲା ବେଳକୁ ଗୋଟେ ବଳଦ ଅଛି, ଅଉ ଗୋଟେ ପଳାଇଛି, ଅନ୍ଧାର ହୋଇଗଲେ ପଛକୁ ସେ ବଳଦଟା ଅଉ ପାଇବ ନାହିଁ, ଏଣେ ଯୁଉଁଟା ଅଛି, ତାକୁ ଛଡ଼ ଦେଲେ ସେ ମଧ ପଳାଇବ, ଏଥିଯୋଗୁଁ ଭାର୍ଯ୍ୟାକୁ ତରବରରେ ଡାକ ପକାଇଲା— 'ଅଲୋ ହେ ! କୁଣିଅକୁ ବାନ୍ଧ, ଠେଙ୍ଗାକୁ ଅଣେ ।' ଚମକ ଏପର୍ଯ୍ୟନ୍ତ ଭୋକ ଉପାସରେ ପିଣ୍ଡାରେ ବସିଥିଲା, ଷଣ୍ଢ ଅସିଲା ଯେ ସେ ପଦେ କଥା ନ କହୁ ଏକାବେଳକେ ବାଡ଼ି ଅଡ଼କୁ ସଳଖିଲା, ସ୍ତ୍ରୀ ଦେଖି ସେ କମିଛ,କମିଛ ହଉଥିଲା । ଯହୁଁ ଶୁଣିଲା—'କୁଣିଅକୁ ବାନ୍ଧ, ଠେଙ୍ଗାକୁ ଅଣେ' ତହୁଁ ତାର ପେଟେଲହୁ ପାଣି ହେଲା,ଭାବିଲା—କରେ,ସ୍ତ୍ରୀ କଣ ? ଅରେ, ଏ ଗୃହସ୍ଥ ଭାର୍ଯ୍ୟା ଧନହେଁ କଣ ଠକାର କରଥିଲେ, ମୋଠେଇଁ ସ୍ତ୍ରୀଙ୍କର କଣ ଅହଙ୍କା ଥିଲା, ସେଥିପାଇଁ ଏତେବେଳଯେଁ ଉପାସରେ ବସାଇ ବସାଇ ଅନ୍ଧାର ହୋଇ ଅସିବାରୁ ପଛକୁ ମତେ ବାନ୍ଧ ଠେଙ୍ଗା ଖୋଇବା ପର୍ଯ୍ୟନ୍ତ ଗଲାଣି, ଅଉ ଏଠାରେଁ ରହିଲେ ରକ୍ଷା ଅଛି ? ଏବେ ଯାହା ହେଲା ହେଲା, ପ୍ରାଣ ଘେନି ପଳାଇଲେ ରକ୍ଷା । ସ୍ତ୍ରୀ ଭାବ ଚମକ ଝପଟ ମାଇଲା । ଝପଟ ମାଇଲା ସିନା, ସକାଳୁ ଅସି ସନ୍ଧ୍ୟା ହେଲା, ପେଟରେ ଅନ୍ନ ପଶି ନାହିଁ, ଦେହରେ ବଳ କାହୁଁ ଅସିବ ? ଖଣ୍ଡେ ଦୌଡ଼ ଯାଇ ଗୋଟେ କଛି ପାଖରେ ଲୁଚକର ବସି ଟିକିଏ ଦମ୍ ମାଇଲା । ଏଥିମଧ୍ୟରେ ଷଣ୍ଢ ବଳଦ ଦଉଡ଼ା ବାନ୍ଧି ଦେଇ କୁକୁରଟା

କୁଅଡ଼େ ଡଃ ବୋଲି ଡାକ ମାରିଲା । ବଡ଼ ପାଟି କରି "ଦେଖିଲି" "ଦେଖିଲି" ବୋଲି ଡାକ ମାରିଲା । ଚମର ଯେତେବେଳେ ଶୁଣିଲା—'କୁ 'ଦେଖିଲି' 'ଦେଖିଲି' ବୋଲି କହୁଛ, ବୁଝିଲା—ମୁଁ ଏବେ ଅଣ୍ଟା ଲୁଚି କରି ବସିଲି ! ସେ ତ ଦେଖିସାରିଲାଣି, ପଛକୁ ପାଖକୁ ନ ଯାଇ ପଳାଇଲେ ଷଣ୍ଢ଼ର ରାଗ ବଢ଼ିବ ସିନା । ଯାଏଁ, ଧରାପଡ଼ିଲିଣି ତ ଗୋଡ଼ତଳେ ପଡ଼ି କ୍ଷମା ମାଗେ, ଏହା ବୋଲି ଧଇଁ ସଇଁ ହୋଇ ଆସିଲା ବେଳକୁ ଷଣ୍ଢ଼ ଭୁକୁରକୁ ବାନ୍ଧି ଦେଇ ପିଣ୍ଡାରେ ଆସି ଠିଆ ହୋଇଛି । ଚମର ଯିମିତି ପହଞ୍ଚିଲା, ସେମିତି ସାଙ୍ଗେ ସାଙ୍ଗେ ତା ଗୋଡ଼ ତଳେ ପଡ଼ି କହିଲା—ମୋର ସବୁ ଦୋଷ, ମତେ କ୍ଷମା ଦିଅ । ଷଣ୍ଢ଼ ଏ କଥା ଶୁଣି ବାବା ହୋଇ ପଚାରିଲା—କିଏ ! ଏ କଣ ? ତୁମେ ଗୋଡ଼ତଳେ କିଆଁ ପଡ଼ୁଚ ? ଏହା କଣ କହୁଚ ? ଇମିତି ତ କିଛି କଥା ନାହିଁ; ତୁମେ ଇମିତି କିଆଁ ହଉଚ ? ଚମର କହିଲା—ଷଣ୍ଢ଼ ! ତୁମେ ଯାହା କଲଣି ସେଥିରେ ମୁଇଁ କେବଳ ହେଲି, ନା, ଯେ କେହି ଲୋକ ହବ ? ଷଣ୍ଢ଼ କହିଲା—ମୁଁ କଣ କଲି ? ଚମର କହିଲା—ହଁଯେ ! ମୋ ଦୁଃଖରେ ତ ମୁଁ ଯାଉଥିଲି, ତୁମେ ତୁଚ୍ଛାଟାରେ ବନ୍ଧୁସ୍ନେହ ଦେଖାଇ କହିଲ—ଯାଅ, ଘରେ କାଞ୍ଜି ଅଛି, ଭାତ ଗଣ୍ଡେ ଖାଇକରି ଯିବ । ତୁମର କଥା ଅନୁସାରେ ତୁମ ଘରେ ପହଞ୍ଚିଲି । ତୁମ ଭାର୍ଯ୍ୟା କହିଲା—ଟିକିଏ ବସ, ଘିଅ ଅଣୁ, ଭାତଗଣ୍ଡେ ଖାଇକରି ଯିବ । ମୁଁ ବୁଝିଲି—ବନ୍ଧୁଲୋକ ତ, କାଞ୍ଜିଭାତ ଖାଇବାକୁ ଦେବାକୁ ଲାଜ ମାଡ଼ୁଛି; ସେଥିପାଇଁ ବୋଧହୁଏ ଘିଅ ପାଇଁ କିଏ ଯାଇଛି । ଦେଖୁ ଦେଖୁ କାଞ୍ଜି ନାହିଁ, କି ଘିଅ ନାହିଁ; ପଛକୁ ତୁମେ ଆସିଲ ଯେ କଥା ନାହିଁ କି ବାର୍ତ୍ତା ନାହିଁ, ସାଙ୍ଗେ ସାଙ୍ଗେ ତୁଣ୍ଡିଆକୁ ବାନ୍ଧ, ଠେଙ୍ଗାକୁ ଆଣେ—ଏହା ଶୁଣି କେଉଁ କୁଣିଆ ନିଜ ପ୍ରାଣ ଘେନି ନ ପଳାଇବ ? ହଉ ଭଲ ମୁଁ ଗଲି ଯେ ପ୍ରାଣ ଭୟରେ ଲୁଚିଲି । ଲୁଚିଲେ ମଧ କାହୁଁ ନଖାରି ନଖାରି ଗୁହାଁଲ ଯେ ସେଥିରେ ଧରାଟିଏ ପଡ଼ିଲି । ପଛକୁ

କହୁଲ 'ଦେ ୀକ୍'। ଏବେ ଦେଖା ତ ପଡ଼ଲ, ପଛବୁ ସ୍ୱଗ ବଢ଼ିବ ସିନା ବୋଲି ୀଣ ପଣୁଚ, ମତେ ରକ୍ଷା କର; ମୋର ଉପାୟ କଣ ଅଛି ?

ଷଣ୍ଢ ଏସବୁ କଥା ଶୁଣି ହସିଲ୍, କହଲ୍—ହସ୍ ୀଷ୍ଟୁ। ଏସବୁ କଥା ମିଛ। ତୁମର ବୁଝିବା ଭୂଲ। ତୁମ ଉପରେ ମୋର କଛି ରାଗ ନାହିଁ, ତୁମେ ମୋର କଛି ଦୋଷ କର ନାହିଁ। ମୁଁ କାହିଁକି ତୁମକୁ ମାରନ୍ତି ? ଏବେ ମୋ କଥା ଶୁଣିଲେ ସବୁ ବୁଝି ପାରବ। ଶୁଣିବ। ମୋ ଭାର୍ଯ୍ୟା ନାଁ ବାଞ୍ଛି; ମୋ ନାଁ ଧିଅ; ବଳଦ ଦୁଇଟାଙ୍କ ନାଁ ଠେଙ୍ଗା, ହଣିଅ; କୁକୁର ନାଁ ଦେଖିଲ। ମୁଁ ଅସିଲା ବେଳକୁ ତ ଅସମସ୍ତ ହୋଇଥିଲ, ତୁମ କଥା କଛି ନ ସରୁର ଏ ପଶୁ ଙ୍କାବଙ୍କ କଥା ଅଗ ବୁଝି ବସିଲ। ତୁମେ ସେ ସବୁ ଶୁଣି ଡରିଛ ଯାଇଚ। ନ ହେଲେ ଇଠାଯାଏ କଥା ଯାଇ ନ ଥାନ୍ତା। ଅଉ ଏକ କଥା, ବାଞ୍ଛି ଯେବେ ତୁମକୁ ମୁଠିଏ ଖାଇବାକୁ ଦେଇ ବିଦା କର ଦେଇଥାନ୍ତା, ତେବେ କଥା ଏତେ ଦୂର ଯାଇ ନ ଥାନ୍ତା। ସେ ମୋ ଅସିବାକୁ ଅପେକ୍ଷା କଲ, ସେଥିରେ ତୁମର ଖାଇବାର ବିଲମ୍ବ ହୋଇଛି। ପଛକୁ ଏସବୁ ନାଁରେ ମୁଁ ଡାକିବାରେ ତୁମର ଭୟ ହୋଇଛି। ନ ହେଲେ କଛି କଥା ନାହିଁ। ଏବେ ମୋର ସବୁ ଦୋଷ, ତୁମେ ମତେ କ୍ଷମା ଦଅ। ଅସ, ଦୁ'ଷଣ୍ଢ ଏକାଠେଇଁ ଖାଇବା। ଚନ୍ଦକ ଏସବୁ ବୁଝି ଦମ୍ଭ ପାଇଲ। ତା'ପରେ ଦହେଁ ଏକାଠେଇଁ ଖାଇସାରଲେ। ତା ପରେ ଚନ୍ଦ୍ର ଶଶୁର ଘରକୁ ବିଦାୟ ହେଲେ।

ଯେଉଁ ଲୋକେ ଏସବୁ ଘଟଣା ଦେଖିଥିଲେ, ସେ ସବୁ ଯ୍ୱା କାନକୁ ତା କାନ କରିବାରେ ଏ କଥା ଏବେ ଗୁଡ଼ଅଚ୍ଛେ ବ୍ୟାପିଗଲ—ଯେ ଶୁଣୁଚି ସେ ହସୁଚି।



# ସାଧୁ ସଙ୍ଗ

କୌଣସି ରାଜ୍ୟରେ ଜଣେ ରାଜା ଥିଲେ । ସେ ରାଜା ଗଣ୍ଡମୂର୍ଖ, ଦାନ ଧର୍ମ ହୋଇ କଣ, ସେ ଜାଣି ନ ଥିଲେ; ଦଣ୍ଡି ବାନ୍ଧି କୌଣସି ପ୍ରକାରେ ଧନ ଆଣିବା ତାଙ୍କର ନିତ୍ୟ କର୍ମ । ଏଥି ଯୋଗୁଁ ସେ ରାଜା ଘରକୁ କେବେ କେହୁ ସାଧୁ ସନ୍ନ୍ୟାସୀ ପଣ୍ଡିତ ଭଦ୍ରଲୋକ ଯାଆନ୍ତି ନାହିଁ । ରାଜା ସବୁବେଳେ ଦଣ୍ଡି ନେବାରେ ସେ ରାଜ୍ୟର ପ୍ରଜାମାନେ କାଙ୍ଗାଳ । ବର୍ଷକ ମୁଠେ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ, କେହୁ ହେଲେ ପାଆନ୍ତି ନାହିଁ । ଲୋକେ କେତେ ହୟାନ ହେବେ । ଇମିତି ବହୁତ ପୀଡ଼ା ପାଇବାରୁ ସମସ୍ତେ ରାଜାଙ୍କର ଅମଙ୍ଗଳ ପାଞ୍ଚୁଥାନ୍ତି । ଖାଲି ଭୟରେ ପାଟି ଫିଟାଇ ପାରନ୍ତି ନାହିଁ । ସେ ରାଜ୍ୟ ଏହିପରି ଅଶାନ୍ତିରେ ଉବୁଟୁବୁ ଥାଏ । ଦିନେ ଜଣେ ବାବାଜି ସେ ଗଡ଼ ଭିତର ଦେଇ ରାଜାଘର ଆଡ଼କୁ ଯାଉଥାନ୍ତି । ସେ ରାଜାଘର ଚିହ୍ନି ନ ଥାନ୍ତି । ସେଥିଯୋଗୁଁ ବାଟଯାକ ପଚାରି ପଚାରି ଯାଉଥାନ୍ତି । ଇମିତି ପଚାରି ପଚାରି ଯାଉ ଯାଉ ଜଣେ ଭଦ୍ରଲୋକଙ୍କୁ ପଚାରିବାରେ ସେ ଭଦ୍ରଲୋକ କହିଲେ—ବାବାଜି, ରାଜାଘରକୁ ତୁମେ କାହିଁକି ଯିବ ? ବାବାଜି କହିଲେ—ବାବା ! ଆମେ ବିଦେଶୀ ଲୋକ, ଭିଖ ମୁଠେ ମାଗିଲେ ପେଟ ପାଳିବା, ନ ହେଲେ ରାଜାଘରେ ଆମର କାମ କଣ ? ସେ ଭଦ୍ରଲୋକ ଏହା ଶୁଣି ହସି ହସି କହିଲେ—ବାବାଜି ! ତୁମେ ଏଇ ରାଜାଘରୁ ଭିଖ ପାଇବ ? ତୁମର ଯେବେ ଦଶା ମନ୍ଦ ପଡ଼ିଥିବ ତେବେ ଏ ରାଜାଘରକୁ ଯିବ । ବାବାଜି ଏହା ଶୁଣି କହିଲେ—ବାବା ! ଏପରି କାହିଁକି କହୁଛ ? ରାଜାଘରୁଟେ, ଆମେ ତ ଟଙ୍କା ସୁନା ମାଗିବୁ ନାହିଁ, ସାମାନ୍ୟ ଚାଉଳ ଗଣ୍ଡେ ମିଳିବ ନାହିଁ ? ଭଦ୍ରଲୋକ କହିଲେ—ବାବାଜି ! ଏ ରାଜା ଭାରି ଲୋଭୀ, ନେଇ ଜାଣେ, ଦେଇ ଜାଣେ ନାହିଁ । କାହାରିକୁ ଚାଉଳ ମୁଠେ ଦବା ଯାହା ଜାତକରେ ନାହିଁ । ନ ଦେଲେ ତ

ନାହିଁ, ଯେ ମାଗିବାକୁ ଗଲ; ତା ଠେଇଁ ଯେତେ କିଛି ଥାଏ, ତେବେ ଓଳିଏ ଭାତଟିଏଁ ସେତିକ ଛଡ଼ାଇ ନାଏ, ଯା ଛଡ଼ା ତାକୁ କିଛି ମାଡ଼ ଦିଏ। ଏଥିପାଇଁ କହୁଛି—ଯେବେ ତୁମର ହିଲ ଯୋଗ ଥାଏ, ତେବେ ସେ ରଜା ପାଖକୁ ଯିବା କଥା ବନ୍ଦ କର।

ବାବାଜି ଏହା ଶୁଣି ମନେ ମନେ ଭାବିଲେ—ମୁଁ ଏ ରାଜ୍ୟରେ ନୂଆ, ମୁଁ ବା କପର ଏ ରଜା କଥା ଜାଣିବି ? ଏ ଲୋକ ତ ଏଠାକାର ଲୋକ, ତା କଥା କଷ୍ଟେ ସତ ହୋଇଥିବ। ତେବେ କଣ ରଜା ପାଖକୁ ଯିବି ନାହିଁ ? ଅଛା, ମୁଁ ନ ଯିବି ସିନା, ମୋ ପରି ତ କେତେ ଲୋକ ହଇରାଣ ହଉଥିବେ। ବିଶେଷରେ ପ୍ରଜାଗୁଡ଼ାକ ଅତ୍ୟାଚାରରେ ମରିବାକୁ ବସିଲେଣି। ଏପରି ସ୍ଥଳେ ମତେ ମାଡ଼ ହେଲେ ପଛକେ ହେବ, ଏ ରଜାକୁ ଶିକ୍ଷା ଦେବାକୁ ଚେଷ୍ଟା କରିବି, ଛାଡ଼ିବି ନାହିଁ। ଏହି ପ୍ରତିଜ୍ଞା କରି ବାବାଜି ଗୋଟେ ଉପାୟ ଚାହିଁଲେ। ସେ ଦେଖିଲେ ଯେ ଏ ରଜାଟା ଲୋଭୀ। ଲୋଭୀକି ଧନ ଦେଖାଇଲେ ସେ ବଶ ହୁଅନ୍ତି। ତେବେ ଏ ରଜାକୁ ଧନ ଲୋଭ ଦେଖାଇଲେ ଅବଶ୍ୟ ହାତ ହେବ, ନ ହେଲେ ମୋତେ ଦେଖା ପର୍ଯ୍ୟନ୍ତ ଦେବ ନାହିଁ ଅଥବା ମୋ ଉପରେ ଠାକୁ ହୋଇଗଲେ ହୋଇଯିବ। ଯାହା ହେବାର ହଉ, ମୁଁ ଅବଶ୍ୟ ଯିବି। ଏହା ବିଚାରି, ଗୋଟେ ଟିଣ ଡବା ସଂଗ୍ରହ କରି ସେଥିରେ ଗୁଡ଼ାଏ ଗୋଡ଼ି ପଥର ପୂରାଇ ତାକୁ ଝୁଲି ଭିତରେ ନେଇ ରଜାଦୁଆରକୁ ଗଲେ। ରଜା ଦୁଆରେ ପହଞ୍ଚିଲା କ୍ଷଣି ଦ୍ୱାରୀ ବାବାଜିଙ୍କି ଦୂର୍ ଦୂର୍ ମାର୍ ମାର୍ କଲା। ବାବାଜି ପଚାରିଲେ—କଣ ? ଅମେ ଭିଖାରୀ ଲୋକ, ତୁମେ ଅମକୁ ଇଚ୍ଛିତ ମାର ନମାରି କାହିଁକି ହଉଚ ? ଦ୍ୱାରୀ କହିଲା—ଏଠାଇଁ ଭିଖ ଫିଖ କିଛି ମିଳିବ ନାହିଁ। ରଜା ଦେଖିଲେ ତୁମର ବେଶି ଖରାପ ହେବ, ତୁମେ ବେଗେ ପଳାଅ। ଯାହା ରଜାଙ୍କର ହୁକୁମ ଅଛି, ମୁଁ ତାହା କରିବି, ମୋର କଣ ଦୋଷ ?

ବାବାଜି ଦେଖିଲେ ଯେ ସେ ଦ୍ୱାରୀଲୋକ ଯାହା କହୁଥିଲେ, ତାହା ସତ । ତହୁଁ ଦ୍ୱାରୀକୁ କହିଲେ—ତୁମେ ଅଜ ରାଗ ନାହିଁ । ଆମେ କିଛି ମାଗିବାକୁ ଆସି ନାହୁଁ, ଖାଲି ରଜାଙ୍କ ସାଙ୍ଗେ ଟିକିଏ ମୁଲା-କାତ କରିବାକୁ ଆସିଛୁ । ଦ୍ୱାରୀ କହିଲା—କାହିଁକି ମୁଲାକାତ କରିବ ? ସେତକ ନ କହିଲେ ମୁଁ ଜଣାଇ ପାରିବି ନାହିଁ । ବାବାଜି କହିଲେ—ଆମ ହାତରେ କିଛି ଧନ ଅଛି, ସେତକ ରଜାଙ୍କ ପାଖରେ ରଖାଇ ଦେବାକୁ ଆସିଛୁ । ଦ୍ୱାରୀ କହିଲା—ତୁମେ ସତ କହୁଚ କି ମିଛ କହୁଚ ମୁଁ ଜାଣିବି କମିତି ? ତୁମ ଧନ ଦେଖିଲେ ଯାଇ ରଜାଙ୍କୁ ଜଣାଇବି, ନୋହିଲେ ତୁମେ ଫେରି ଯାଅ । ବାବାଜି ଦୁଆରୀର ବିଶ୍ୱାସ ପାଇଁ ଝୁଲିରୁ ତିଣି ଭିବାଟି କାଢ଼ି ଝଣ ଝଣ କଲେରୁ ଦ୍ୱାରୀ ବିଶ୍ୱାସ କରି ରଜାଙ୍କ ପାଖକୁ ଯାଇ ଜଣାଇଲା । ରଜା ଯହୁଁ ଶୁଣିଲେ ବାବାଜି ଟଙ୍କା ଗୁଡ଼ାଏ ଦେବ, ତହୁଁ ସଙ୍ଗେ ସଙ୍ଗେ ତାକୁ ଡକାଇ ପଠାଇଲେ । ବାବାଜି ପହଞ୍ଚିବାରୁ ରଜା ପଚାରିଲେ—ବାବାଜି, ତୁମେ କଣ ଚାହୁଁଚ ? ବାବାଜି କହିଲେ—ମହାରାଜ, ଭିକ ମାଗି ମାଗି ଗୁଡ଼ାଏ ଧନ ହାତରେ ରଖିଛି । ମୋର ତ ଘରଦ୍ୱାର ସିନ୍ଦୁକ ବାକସ କିଛି ନାହିଁ । ପଛକୁ କିଏ ଚୋରାଇ ନେଇଯିବ । ଏହି ଭୟରେ ସେ ଧନତକ ଆଣିଛି ଆପଣଙ୍କ ଜିମା କରି ଦେବାକୁ । ରଜା ଏହା ଶୁଣି ବଡ଼ ଖୁସି ହୋଇ କହିଲେ—ଭଲ କଥା, ତୁମ ଧନ ଦିଅ, ଆମ ଭଣ୍ଡାରରେ ରଖାଇ ଦେବୁ । ଏହା ଶୁଣି ବାବାଜି କହିଲେ—ଆଜ୍ଞା ! ସେ କଥା ସତ ଯେ, ମୋର ଗୋଟିଏ କଥା ବୁଝି-ବାର ଅଛି । ସେତକ ବୁଝିଲେ ଟଙ୍କାତକ ଆପଣଙ୍କ ଜିମା କରି ଦେବି । ରଜା କହିଲେ—କି କଥା, ତେବେ କହ । ବାବାଜି କହିଲେ—ଆଜ୍ଞା ! ଆପଣ ରଜା, ବହୁତ ଟଙ୍କା ରଖୁଚନ୍ତି, ଆପଣଙ୍କୁ ଅବଶ୍ୟ ଜଣାଥିବ । ମୁଁ ଭିଖାରୀ ଲୋକ, ମୋର ବା ଟଙ୍କା କେତେ ! ମୁଁ କିଛି ଠିକଣା କରି ପାରୁ ନାହିଁ, ସେଥିପାଇଁ ପଚାରୁଛି—କଣ କଲେ ମୋ ଧନତକ ମୁଁ ମରି-

ଗଲେ କେମା ସାଙ୍ଗେ ଯାଙ୍ଗେ ଯିବ ? ଏତକ ବୁଝି କି ଧନତକ ଆପଣଙ୍କ ଜମା କରି ଦଅନ୍ତୁ । ଏହା ଶୁଣି ରଜା ତଳକୁ ଉପରକୁ ଚିକଏ ଗୁହିଁ କହିଲେ—ବାବାଜୀ ! ଏ ମୁଁ ତ ଏ କଥା କହି ପାରିବୁ ନାହିଁ । ଅଚ୍ଛା, ମନ୍ତ୍ରୀଙ୍କି ପଗ୍ଗୁରିବା । ମନ୍ତ୍ରୀଙ୍କି ପଗ୍ଗୁରିବାରେ ସେ ମଧ୍ୟ କିଛି ଉତ୍ତର କରି ପାରିଲେ ନାହିଁ । ତାପରେ ଗୋଟେ ବଡ଼ ପଣ୍ଡିତ ସଭା ହେଲା, ସେଥିରେ ଏ କଥା ପଡ଼ିଲା । ପଣ୍ଡିତମାନେ ନାନା ପ୍ରକାର ଆଲୋଚନା କଲେ; ମାତ୍ର କିଛି ସ୍ଥିର କରି ପାରିଲେ ନାହିଁ । ଯେବେ କେହି କିଛି କହି ନ ପାରିଲେ, ବାବାଜୀ କହିଲେ—ଅଚ୍ଛା, ମୁଁ ଗୋଟେ କଥା କହୁଛି, ତାହା ଆପଣମାନଙ୍କ ମନକୁ ପାଇବ କି ନା କହି ପାରୁ ନାହିଁ । ମୁଁ ଦେଖୁଛି—ଏ ଜମି ବାଡ଼ି, ଟଙ୍କା କଉଡ଼ି କେହି ସାଙ୍ଗରେ ଯିବେ ନାହିଁ । ସାଙ୍ଗରେ ଯିବ କେବଳ ଧର୍ମ । ଯେବେ ଏ ଟଙ୍କା କଉଡ଼ିକ ଧର୍ମ ସାଙ୍ଗେ ବଦଳାଇ ଦିଆଯାଏ, ତେବେ ଟଙ୍କା କଉଡ଼ି ସେହି ଧର୍ମ ରୂପରେ ସାଙ୍ଗରେ ଯିବ । ତା ଛଡ଼ା ଯାହା ଯେତେ କଲେ କେହି ସାଙ୍ଗରେ ଯିବେ ନାହିଁ । ସବୁ ଏହିଠାରେ ପଡ଼ି ରହିବ ।

ଏହା ଶୁଣି ସମସ୍ତେ କହିଲେ—ଏ କଥା ସତ; ଏ କଥା ପ୍ରକୃତ । ଏଥିରେ ରଜାଙ୍କର ମନ ମଧ୍ୟ ମାନିଗଲା । ସେ ଦେଖିଲେ ଯେ ପ୍ରକୃତରେ ଆମେ ସବୁ ଅନ୍ଧାରରେ ପଡ଼ିଥାଉଁ, କିଛି ନ ବୁଝି ନ ଶୁଣି ଖାଲି ଟଙ୍କା ଜମାଇବାରେ ଲାଗିଥାଉଁ । ନା, ଏଣିକି ଆଉ ଏ କଥା ହେବ ନାହିଁ । ପ୍ରକୃତରେ ଏ ଟଙ୍କାରେ ଧର୍ମ ନ କଲେ ଏହା ଅମର ନୁହେ । ଏଣିକି ଏ ଟଙ୍କାରେ କେବଳ ଧର୍ମ କରିବା ଉଚିତ । ଏହା ଭାବି ରଜା ମନ୍ତ୍ରୀଙ୍କି କହିଲେ—ମନ୍ତ୍ରୀ ! ଏ ବାବାଜି ଆଜିଠାରୁ ଆମର ଗୁରୁ ହେଲେ, ଏହାଙ୍କୁ ମଠବାଡ଼ି ଦେଇ ସୁଖରେ ରଖାଅ । ଆଜିଠାରୁ ବାବାଜି ଯାହା କହିବେ, ସେହି ଅନୁସାରେ କାମ ହେବ ।

ସନ୍ତକୁ ସେହି ଦିନଠାରୁ ବାବାଜି ସେଠାରେ ମଠବାଡ଼ି ପାଇ ଆନନ୍ଦରେ ରହିଲେ । ବାବାଜିଙ୍କ କଥା ଅନୁସାରେ ରାଜାଘରେ ପ୍ରତିଦିନ ଦାନ ଖଇରାତ ବନ୍ଦୋବସ୍ତ ହେଲା । ରାଜ୍ୟରୁ ଦୁଷ୍ଟ ମିତ୍ର ଉଠିଗଲା, ପ୍ରଜା-ମାନେ ମହା ସୁଖରେ ରହିଲେ । ରାଜା ଧର୍ମ କରିବାରୁ ଲୋକେ ସବୁ-ବେଳେ ଧନ୍ୟ ଧନ୍ୟ କହିଲେ ।

ସାଧୁ ସଙ୍ଗରେ ଏହିପରି କ୍ଷଣକ ମଧ୍ୟରେ ଖରାପ ଲୋକ ମଧ୍ୟ ଦେବତା ପାଲଟି ଯାଏ ।



# ବୁଦ୍ଧି ପରୀକ୍ଷା

ପୂର୍ବେ ଅଠଗଡ଼ ରାଜ୍ୟରେ ନୀଳାଦ୍ରି ବ ବୋଲି ଜଣେ ରାଜା ଥିଲେ । ସେ ଯେମିତି ସାଧୁ, ସେମିତି ଚତୁର । ତାଙ୍କ ନ୍ୟାୟ ବୁଝାମଣାରେ ପ୍ରଜାମାନେ ମହାସୁଖରେ ଚଳୁଥିଲେ । ତାଙ୍କ ରାଜ-ସଭାରେ ବହୁତ କବି, ବହୁତ ପଣ୍ଡିତ ଥିଲେ । ପାଠଶାସ୍ତ୍ର ବିଚାରରେ ତାଙ୍କର ଦିନ କଟୁଥିଲା, ତାଙ୍କର ଜଣେ ଦିଅନ ଥିଲେ । ସେ ବଡ଼ ବୁଦ୍ଧିଆ । ତାଙ୍କ ରାଜ୍ୟର କେତେଗୁଡ଼ାଏ କାମ ତାଙ୍କୁ ବୁଝିବାକୁ ଦେଇ-ଥାନ୍ତି । ସବୁ ଠେଇଁ ଅଛି—ତଳାତଳକୁ ଦିଅନ । ଦିଅନ ମଧ୍ୟ ମାସକୁ ମାସ ଗୁଡ଼ାଏ ଦରମା ପାନ୍ତି. ଚଢ଼ିବାକୁ ପଧ ସୁନ୍ଦର ଘୋଡ଼ାଗାଡ଼ି ଖଣ୍ଡିଏ ପାଇଥାନ୍ତି, ତା ଛଡ଼ା ଯିବା ଆସିବାକୁ ରାଜାଘରୁ ସବାରି, ହାତୀ ପାନ୍ତି । ଯେତେ ପରା ହେଲେ ସେ ଲୋକଙ୍କ ଜଣେ ଚାକର । ତାଙ୍କ ଛଡ଼ା ଅନେକ ଛୋଟ ବଡ଼ ଚାକର ଥାନ୍ତି । ତେବେ ଯାଙ୍କ ବଳି କେହି ବେଶି ଦରମା ପାଉ ନ ଥିଲେ । ରଜାଙ୍କ ପାଖରେ କେତେଗୁଡ଼ାଏ ଛୋଟ ଚାକର ଥାନ୍ତି, ତାଙ୍କୁ ଖଟଣୀ ସେବକ କହନ୍ତି । ଏମାନେ ଅଳ୍ପ ଦରମା ପାନ୍ତି, ରାତିଦିନ ଖଟନ୍ତି । ସବୁଠେଇଁ ଅଛି—ତଳିଆ ଛୋଟ ଚାକର ଛୋଟ ଦରମା ପାନ୍ତି, ଛୋଟ କାମ କରନ୍ତି, ବଡ଼ ଚାକର ବଡ଼ ଦରମା ପାନ୍ତି, ଅଳ୍ପ କାମ କରନ୍ତି । ଦିଅନ ମାସକୁ ଦୁଇ ଶହ ଟଙ୍କା ପାନ୍ତି, ଦିନକ ପାକରେ ମୋଟେ ଛଅ ଘଣ୍ଟା କଚେରି କରନ୍ତି । ହାତୀ ଘୋଡ଼ାରେ ଯିବା ଆସିବା କରନ୍ତି । ଯା ଦେଖି ଖଟଣୀ ସେବକ ଭିତରୁ ହରିଆ ଦିନେ ରଜାଙ୍କୁ ଜଣାଇଲା—ମହାରଜା ! ମୋର ଗୋଟିଏ ଗୁହାରି କହିବାକୁ ଅଛି । ରଜା କହିଲେ—କି ଗୁହାରି, କହ । ହରିଆ ହାତ ଯୋଡ଼ି କହିଲା—ମଣିମା ! ମୁଁ ରାତି ରାତି ନାହିଁ, ଦିନ ଦିନ ନାହିଁ, କି ଖରା, କି ବର୍ଷା, କି ଶୀତ, ଅଠକାଳି ବାରମାସି ଖଟୁଛି ଖଟଣୀ ଖଟି ଖଟି ମାସକୁ ପାଉଛି ଛ'ଟା ଟଙ୍କା

ଦରମା, ଅଜ ବଅନ ବାରୁ ଦନକୁ ଛନ ଘଣ୍ଟା କରର ଦର ସେ ପାଇଲେ ମାସକୁ ବୁଳଣ୍ଠ ଟଙ୍କା, ଏହା ଛଡ଼ା ଯିବା ଅହିବାକୁ ଘୋଡ଼ା ଦାଗ । ‹ ଦଶ ନ ୍ୟାଯୁ ଗୃହ ଜ୍ଞା ୦ ? ହ୍ଲୁମ୍ ଧର୍ମାବତାର, ଏ କଥାକୁ ଟିକିଏ ବିଗୃର କରନ୍ତୁ, ଏଇ ମୋର ଗୁହାର । ରଜା ଏହା ଶୁଣି ଟିକିଏ ହସି କରି କହିଲେ—ତୁ ଯାହା କହିଲୁ, ସତ କଥା; ଅଚ୍ଛା, ଦନେ ଏ କଥା ବିଗୃର କରିବା । ହରିଆ ରଜାଙ୍କଠାରୁ ଏତିକ ଶୁଣି ମନେ ମନେ ଖୁସିହୋଇ ଭାବିଲା—ରଜା ଯେତେ-ବେଳେ ବୁଝିବାକୁ କହିଲେଣି, ସେତେବେଳେ ନିଶ୍ଚେ ମୋ ଦରମା ବଢ଼ିଯିବ । ଏପରି କେତେ ଦନ ଗଲା ପରେ ମହାନଦୀରେ କନ୍ଦରପୁର ପେଣ୍ଠରେ ଛନ ଗୃହ ଖଣ୍ଡ ଅଗ୍ନିବୋଟ ଆସି ଲାଗିଲା । ରଜା ଏ କଥା ଶୁଣି ପାରିଲେ । ଦେଖିଲେ ଯେ ଗୋଟେ ସୁବିଧା ମିଳିଛି, ଏଥିରେ ହରିଆର ଗୁହାରଟା ବୁଝି ଦବା । ଏଇ କଥା ଭାବି ହରିଆକୁ ଡାକ କହିଲେ—ହରିଆ ! କନ୍ଦରପୁର ଠେଇଁ ସୁ ଛନ ଗୃହ ଖଣ୍ଡ ଅଗ୍ନିବୋଟ ଲାଗିଛି, ଯା ବୁଝି ଆସିବୁ—ସେଥିରେ କଣ ଆସିଛି ? କନ୍ଦରପୁର ଗଡ଼ଠାରୁ ଛନ କୋଶ ବାଟ । ହରିଆ ହୁକୁମ ପାଇଲା କ୍ଷଣି କନ୍ଦରପୁର ଧାଇଁଲା ହୁଁ ଶୋଷା ହୁଁ ଭୋକା ହୋଇ କନ୍ଦରପୁରରେ ପହଞ୍ଚି ପଗୃରି ବୁଝିଲା, ଅଗ୍ନିବୋଟରେ ଲୁଗା ଆସିଛି । ହରିଆ ଏତିକ ବୁଝି ଫେରିଏ ଫେରିଏ ଦୌଡ଼କରି ଆସି ରଜାଙ୍କୁ ଜଣାଇଲା—ମହିମା । ସେଥିରେ ସବୁ ଲୁଗା ଆସିଛି । ରଜା ପୁଣି ପଗୃରିଲେ, ସେ ଲୁଗା କଣ ଆମ ଆଠଗଡ଼ରେ ବିକି ହେବ ? ହରିଆ କହିଲା—ଅଜ୍ଞା ! ମୁଁ ତ ତା ବୁଝି ନାହିଁ । ରଜା କହିଲେ—ତେବେ ଶୀଘ୍ର ଯାଇ ବୁଝି ଆ । ହରିଆ ଅଜ ବସି ଝାଳ ମାରିବ କଣ, ସାଙ୍ଗେ ସାଙ୍ଗେ ପୁଣି କନ୍ଦରପୁର ଦୌଡ଼ିଲା । ସେଠାରେ ଯାଇ ବୁଝିଲା—ଏ ଲୁଗା ସବୁ କଣ ଏଠାରେ ବିକି ହେବ ? ଲୁଗା ମହାଜନ କହିଲା—ଏଠାରେ କେହି ଯେବେ ଗ୍ରାହକ ହୁଅନ୍ତି, ତେବେ

ଖଚି ହେବ । ହରିଆ ଏହା ବୁଝି ପୁଣି ଦୌଡ଼ିକରି ଆସି ରଜାଙ୍କୁ ସେହି କଥା ଜଣାଇଲା । ରଜା ପୁଣି ପଚାରିଲେ—ସେ ଅଗ୍ନିବୋଟ ଏଠାରେ କେତେ ଦିନ ରହିବ ? ହରିଆ କହିଲା—ଆଜ୍ଞା, ମୁଁ ତ ସେ କଥା ବୁଝି ନାହିଁ । ରଜା କହିଲେ—ତେବେ ଯାଇ ବୁଝି ଆ । ବିଚରା କଣ କରିବ, ରଜାଙ୍କ ହୁକୁମ ତ, ମାନିବାକୁ ହେବ, ଗୋଡ଼ ହାତ [illegible]ଶଇ ହଜିଥିଲେ ସୁଦ୍ଧା ପୁଣି ଦୌଡ଼ି ଯାଇ ବୁଝିଲା—ଅଗ୍ନିବୋଟ ପନ୍ଦର ଦିନ ରହିବ । ହରିଆ ଏହା ବୁଝି ଆସି ରଜାଙ୍କୁ ଜଣାଇବାରେ ରଜା ପଚାରିଲେ—ସେମାନେ ଲୁଗା ବଦଳରେ ଜିନିଷ ନେବେ, ନା ଟଙ୍କା ନେବେ ? ହରିଆ କହିଲା—ଆଜ୍ଞା, ମୁଁ ତ ସେ କଥା ବୁଝି ନାହିଁ । ରଜା କହିଲେ—ଏବେ ଯାଇ ଏ କଥା ବୁଝି ଆ । ବିଚରାକୁ ଜ୍ୱର ବାଧା ହେଲାଣି, ହେଲେ କଣ ହେବ, ହୁକୁମ ତ କରିଛ, ନ ଯିବାକୁ ବୋପାର ଗତ୍ୟ ନାହିଁ । ପୁଣି ଦୌଡ଼ି ଦୌଡ଼ି ଗଲା, ମହାଜନକୁ ପଚାରି ବୁଝିଲା ଯେ, ସେ ଜିନିଷ ବୋଝାଇ କରି ନେବେ । ରଜାଙ୍କୁ ଆସି ସେହି କଥା ଜଣାଇଲା । ଏହା ବାଦ୍ ସେଇ ହରିଆକୁ ରଜା ପଚାରିଲେ—ହେ ମହାଜନ ନାଁ କଣ ? ହରିଆ କହିଲା—ଆଜ୍ଞା, ମୁଁ ତ ସେ କଥା ବୁଝି ନାହିଁ । ରଜା କହିଲେ—ଥରକୁ ଥର ଯାଉଚୁ, ଏଇ ଛୋଟୋଟା କଥା ବୁଝି ଆସି ପାରୁ ନାହିଁ ? ଏବେ ଯା ଏ କଥା ବୁଝି ଆ । ଦୌଡ଼ି ଦୌଡ଼ି ହରିଆର ଆଉ ଗୋଡ଼ ଚଳୁ ନ ଥାଏ; କଣ କରିବ, ଘୋଷାରି ହୋଇ ପୁଣି ଗଲା, ମହାଜନ ନାଁ ବୁଝି ଆସି ଛାମୁରେ ଜଣାଇଲା । ଏହିପରି ଥରକୁ ଥର ଦୌଡ଼ିବାରେ ହରିଆର ହାଙ୍କାଟି ଉଡ଼ିଲାଣି, ଆଉ ଗୋଡ଼ହାତ ଉଠାଇ ହେଉ ନାହିଁ, ଠାଏ ହାଲିଆ ହୋଇ ପଡ଼ିଗଲା । ହରିଆ ପଡ଼ିଥାଏ, ଏଥିମଧ୍ୟରେ ଦିଆନେ ରଜାଙ୍କ ଛାମୁକୁ ଆସିଲେ । ଦିଆନଙ୍କୁ ରଜା କହିଲେ—କନ୍ଦର୍ପପୁରଠାଇଁ କେତେ ଖଣ୍ଡ ଅଗ୍ନିବୋଟରେ କଣ ଆସିଚି, ଟିକିଏ ବୁଝି ଆସିଲ । ଦିଆନେ ସାଙ୍ଗେ

ଆଗେ ଘୋଡ଼ା ମାରିଦେଇ ଅଗ୍ନିକୋଟରେ ଢଣ ଅସିଚ, ସେତେବେଳେ ତାହା ବଞ୍ଚିବେ କି ନା, ଟଙ୍କା ନେବେ କି ଯାଇ ନେବେ, କେତେ ଦନ ରହିବେ, ମହାଜନ କିଏ, କେଉଁଠାରେ ମହାଜନ, ଏହିପରି ଅନେକ କଥା ବୁଝି ଅସିଲେ। ଦଅନେ ରଜାଙ୍କ ଛାମୁରେ ପହଞ୍ଚିବାରେ ରଜା ହରିଅକୁ ଯାହା ସବୁ ପଚାରିଥିଲେ, ତାହା ସବୁ ଗୋଟି ଗୋଟି କରି ପଚାରିଲେ। ଦଅନେ ସେଇଠାରେ ବସି ସମସ୍ତ ଉତ୍ତର ଦେଉଥାନ୍ତି ତା ଛଡ଼ା ହରିଅକୁ ନ ପଚାରିଥିବା କେତେ କଥା ମଧ୍ୟ ପଚାରିଲେ। ଦଅନେ ସେ ସବୁର ଠିକ୍ ଠିକ୍ ଜବାବ ଦେଲେ। ହରିଅ ସେଇଠାରେ ଠିଆ ରହି ଏସବୁ କଥା ଶୁଣୁଥାଏ। ରଜା ଦଅନଙ୍କୁ ଯାହା ପଚାରିବାର ପଚାରି ସାରି ହରିଅକୁ ଡାକିଲେ। ହରିଅ ରଜାଙ୍କ ଆଗକୁ ଯିବାରେ ରଜା କହିଲେ—ହଇରେ ହରିଅ ! ତୋତେ ଯାହା ପଚାରିଥିଲି, ଦଅନଙ୍କୁ ସେ ସବୁ କଥା ପଚରା ଗଲା ତ ? ହରିଅ କହିଲା—ଅଜ୍ଞା, ମୋଠାରୁ ତ ତାଙ୍କୁ ବେଶି ପଚରାଯାଇଛି। 'ଅଜ୍ଞା, ତୁ ଯେତେ ଥର ଦୌଡ଼ିଲୁ, ଦଅନେ ସେତିକି ଥର ଦୌଡ଼ିଲେ ତ ?' 'ଅଜ୍ଞା, ସେ ତ ଥରକଠାକରେ ସବୁ ବୁଝି ଅସିଲେ, ମୁଁ ତ ଗୋଟିଏ ଗୋଟିଏ କଥା ବୁଝିବାକୁ ଦୌଡ଼ି ଦୌଡ଼ି ମୋ ଗୋଡ଼ହାତରୁ ଶିରମଇ ଉଠୁଛି। ଅଜ୍ଞା, ସରପିଡ଼ାରେ ମୁଁ ଅଉ ଅଠ ଦନ କାଳ ଉଠି ପାରିବି ନାହିଁ।' ରଜା କହିଲେ—ତେବେ ତୁଇ କହ, ତୁ ମାସକୁ ଦିଶହ ଟଙ୍କା ପାଉଛୁ, ନା ଦଅନେ ପାଉଛନ୍ତି ? ହରିଅ ଏ ପର୍ଯ୍ୟନ୍ତ ବୁଝି ନ ଥିଲା ଯେ ଏ ପରୀକ୍ଷା ତାର ପାଇଁ ହେଉଛି ବୋଲି। ଏତେବେଳକୁ ତାର ଚେତା ପଶିଲା। ହରିଅ ଏଥିରେ ମନକୁ ମନ ଲାଜ ହୋଇ ରଜାଙ୍କ ଗୋଡ଼ ତଳେ କମ୍ପି ହୋଇ ପଡ଼ିଯାଇ କହିଲା—ମଣିମା ! ମୋର ଦୋଷ ହୋଇଛି, କ୍ଷମା କରିବେ। ଏବେ ବୁଝିଲି, ଦଅନେ ଦିଶହ ଟଙ୍କା ପାଇବାର ଲୋକ, ମୁଁ ଛ ଟଙ୍କା ପାଇବାର ଲୋକ। ରଜା କହିଲେ—

ଏବେ ଜଣାଙ୍କୁ ବୃକ୍ଷିଲ୍ଲି ? ହିଙ୍ଗି, ହିଡ଼ି, ଛୁ ଦୌଡ଼ି ଦୌଡ଼ି ... ହୋଇ ଯାଉଛୁ । ଏବେ ହୋଡେ ଅଠରିଟି ବୃକ୍ଷ ଦିଅଗଲ, ତୁ ଘରକୁ ଯା । ହରିଆ ମୁଣ୍ଡିଆ ମାରି ଘରକୁ ଗଲା । ଅଜ ଯେ ସବୁ ରଜାଙ୍କର ଏ ବହୁତ ବୁଦ୍ଧି ଦେଖୁଥିଲେ, ସେ ସବୁ ରଜାଙ୍କୁ ଧନ୍ୟ ଧନ୍ୟ କହୁ ଘରକୁ ଗଲେ !

ସେଥିପାଇଁ କଥା ଅଛି—ବୁଦ୍ଧିବଳରେ କଣ ନ ହୋଇପାରେ ?



# ପାଞ୍ଚ୍ ପରମେଶ୍ୱର

ରଣ୍ଟାସପୁର ଗୋଟିଏ ବଡ଼ ଗାଁ । ସେଥିରେ ଛଅଡଶ ଘାଟଦର ବହୁତ ଲୋକ ବାସ କରନ୍ତି । ସେମାନଙ୍କ ଭିତରେ ଘରବୋଲ ଦାସ ବୋଲି ଜଣେ ବ୍ରାହ୍ମଣ ଥିଲେ । ଘରବୋଲ ବଡ଼ା ମୂର୍ଖ ସେଥିକି ଗୃହୀଁ ପୁଣି ବାସିରଣ୍ଡଲକ ଦାନା ନ ଥାଏ । ପିଲା କୁଟୁମ୍ବ ହୋଇ ଗୋଛାଏ । ବଳଁଶଯାକ ଖାଇବା ବିନା ଦିନଦିନ କୁତା ଓପାସରେ ପଠା ପଠା ହୋଇଯାନ୍ତି । ନ ଖାଇ ନ ପିଇ ପଛକୁ ଦାସଙ୍କ ପିଲାଙ୍କର ନାକଦଣ୍ଡୀରେ ପ୍ରାଣ ରହିଲା । ଦିନେ ଗାଁବାଲା ପାଞ୍ଚ ସାତ ଜଣ ଗୋଟେ ପିଣ୍ଡାରେ ବସି ଗଫଦେଇ କରୁଥିଲେ । ଦୈବଯୋଗକୁ ଘରବୋଲ ସେ ବାଟ ଦେଇ ଯାଉଥିଲା । ତା ଉପରେ ନଜର ପଡ଼ିବାରୁ ସମସ୍ତଙ୍କର ଭାରି ଦୁଃଖ ହେଲା । ସେଥିରୁ ଜଣେ କହିଲା—ଜାଣିଲ ! ଖାଇବାକୁ ନ ପାଇ ଦାସର ବଂଶଟାଯାକ ଉଦ୍ଧକ ଭକଲ ହୋଇ ମରିଯିବେ । ଆମେ ସବୁ ଦେଖୁଥିବା, ବଂଶଟାଯାକ ମରିଯିବେ ? ସମସ୍ତେ ତ ବସିଚ, ଗୋଟେ ଭଲା ଉପାୟ କଣ ଯୋଡ଼ିଲ । ଏହା ଶୁଣି ଆଉ ଜଣେ କହିଲା—ସତ କଥା, ତେବେ ଉପାୟ କଣ ଅଛି ? ଏତିକ କଥା—ଆମେ ପାଞ୍ଚଜଣ ବସିଥାଇଁ, ପାଞ୍ଚ୍ ପରମେଶ୍ୱର, ସମସ୍ତେ ବଗୁରି ଯାହା ଗୋଟେ କରିଦେବା, ସେଥିରେ ଯେ ଚଳିଯିବ, ତେବେ ଉପାୟ ତ କିଛି ଦିଶୁ ନାହିଁ । ଏହା ଶୁଣି ଆଉ ଜଣେ କହିଲା—ମତେ ଗୋଟେ କଥା ଅଭୁତ୍ତ, ତୁମମାନଙ୍କ ମନକୁ ସେ ପାଇବ କି ନା ? ମୁଁ ବାପାଙ୍କଠାରୁ ଶୁଣିଥିଲି—"ଦଶମାତା ହରିତଙ୍କ" ଦଶଗୋଟି ମା ଯାହା ନ କରିବ, ଏକା ଗୋଟିଏ ହରିଡ଼ାରେ ତାହା ହୋଇ ପାରିବ । ଘରବୋଲ ତ ଗଜମୂର୍ଖ, ସେଥିରେ ପୁଣି ଉଦାସୀନ । ସେ ତ ଆଉ କିଛି କରି ପାରିବ ନାହିଁ,ଖାଲି ହରିଡ଼ା ଗୁଡ଼ାଏ ଶୁଖାଇ ଛେଚି ଗୁଣ୍ଡ କରି ଯେ ଯୁ' ରୋଗକୁ ମାଗିଲା, ତାକୁ ଦେଇ

ଗୁଣ୍ଡ ଔଷଧ କରି ଦାଅ । ଏଥିରେ ଲୋକେ ନିଶ୍ଚେ ଉପକାର ପାଇବେ । ଅନେକ କଥା ଅଛି—ସଞ୍ଜ ସକାଳେ ଯେ ପୋଖରୀ ଯାଏ, ତା କଉଡ଼ିକୁ ବଇଦ ଖାଏ ? ହରିଡ଼ା ଖାଇଲେ ନିଶ୍ଚେ ଝାଡ଼ାଟି ସଫା ହବ; ଝାଡ଼ାଟି ସଫା ହେଲେ ଭୋକଟି ନିଶ୍ଚେ ହବ; ଭୋକ ହେଲେ ଖାଇଲେ ହଜୁଟି ମଧ ହବ । ଅଉ ରୋଗର ବାଟ କୁଠେଇଁ ରହିଲା ? ଲୋକେ ଉପକାର ପାଇଲେ ପରବୋଲ୍ଲ ଅବଶ୍ୟ ଦିପଇସା ପାଇବ; ତେବେ କଷ୍ଟେ ମଷ୍ଟେ ଚଳିଯିବ । ଏ କଥା ସମସ୍ତଙ୍କ ମନକୁ ପାଇଲା । ଏହି କଥା ଠିକଣା କରି ପରବୋଲ୍ଲକୁ ଡକାଇ ପଠାଇଲେ । ପରବୋଲ୍ଲ ଆସିବାରୁ ତାକୁ ବୁଝେଇ ସୁଝେଇ କହିଲେ, "ଦେଖ, ଦାସେ ! ତୁମେ କାଲିଠୁଁ ହରଡ଼ା ଗୁଡ଼ାଏ ଗୋଟାଇ କରି ଆଣି ସେଗୁଡ଼ାକ ଛେଚି କୁଟି ଛାଣି କରି ଗୁଣ୍ଡ କରି ମୁଣିଟିକରେ ରଖିଥିବ; ଯେ ଇଚ୍ଛା ସେ ରୋଗ ହେଉ, ସେଥିକି ସେଥିରୁ ଯାକେ ଦପାନ ଦେଲେ, ରୋଗୀ ନିଶ୍ଚେ ଭଲ ହୋଇଯିବ । ତୁମକୁ ଦି ପଇସା ମଧ ମିଳିବ । ସେଥିରେ କୌଣସି ପ୍ରକାରେ ପିଲାଏ ଚଳିଯିବେ !" ପରବୋଲ୍ଲ ସେହି ପାଞ୍ଚ ପରମେଶ୍ୱରଙ୍କ କଥା ମାନି ଜଙ୍ଗଲରୁ ହରଡ଼ା ଗୁଡ଼ାଏ ଆଣି ଶୁଖାଇ ଛେଚି କୁଟି କପଡ଼ାଛାଣ ଗୁଣ୍ଡ କରି ମୁଣିଟିକରେ ପୁରାଇ ରଖିଥାଏ ।

ପରବୋଲ୍ଲକୁ ତ କେହି ବୈଦ ବୋଲି ଜାଣନ୍ତି ନାହିଁ, କିଏ କାହିଁକି ଏ ଔଷଦ ମାଗିବ ? ଫେରେ କାହାକୁ ବଳିଛ ଔଷଦ ଦେଲେ ତ ପୁଣି ନାଁ ବଖ୍ୟାତ ହେବ । ତେବେ ଯିନା ରୋଜଗାର ହେବ । ପରବୋଲ୍ଲ ଘରା ବଗ୍ରୁ କାହାର କଣ ହଉଛି, ଖବର ନେଲା । ଲୋକଙ୍କୁ ଯାଚି ଗୁଣ୍ଡି ଔଷଦ ଦେଲା । ଯାହାର ଯାହା ହଉ ପଛକେ ମହୌଷଧ ତ ସେହି କପଡ଼ାଛାଣ ହରଡ଼ା ଗୁଣ୍ଡା, ଅନୁପାନ ଉଷୁମ ପାଣି । ଏ ଔଷଦ ଯେ

ଖାଇବ, ତାରି ଗୋଟେ ଘଣ୍ଟେ ପରେ ଝାଡ଼ା ନିଶ୍ଚେ ହେବ । ଝାଡ଼ା ସଫା ହେଲେ ଅନେକ ରୋଗ ମଧ୍ୟ ଭଲ ହୋଇଯାଏ । ପରବୋଲୁ ବଟାଳକୁ କେତେଥର କେଉ ହଜା । ଗୁଣ୍ଡା ଔଷଧରେ ଭଲ ହୋଇଗଲେ ସେଠାରୁ କ୍ରମେ କ୍ରମେ ତା ନାଁ ଚାରିଆଡ଼େ ବାଜିଲା । ଏଣିକି ପ୍ରତିଦିନ ପରବୋଲୁ ଦୁଆରେ ଦଶ ପନ୍ଦର ଜଣ ରୋଗୀ ଜମିଲେ । ଲୋକେ ଉପକାର ପାଇବାରୁ ତାର ଦ ପଇସା ରୋଜଗାର ମଧ୍ୟ ହେଲା । କ୍ରମେ କ୍ରମେ ପରବୋଲୁର ଘର ଭଲ ଚଳିଲା । ପଛକୁ ତାର ଅବସ୍ଥା ଫେରି ଆସିଲା ।

ଏଣିକି ପରବୋଲୁର ସୁନାମ ପାଞ୍ଚଖଣ୍ଡ ପର୍ଯ୍ୟନ୍ତ ଗଲାଣି । ଚାରିଆଡ଼େ ବଡ଼ ବୈଦ୍ୟ ବୋଲି ଡାକ ପଡ଼ିଲାଣି । ଇମିତି କେତେ ଦିନ ଗଲା ଉତ୍ତାରୁ ଗୋଟେ ରାଇଜର ରଜାଘରେ ଦାସୀ ପୋଇଲା ଦ ଜଣଙ୍କର ହଇଜା ହେଲା । ଉଅସ୍ତୁଠା ଦିନରେ ହଇଜା ହେବାରୁ ରଜାଙ୍କ ମନ ଚଞ୍ଚଳ ହେଲା । ସେ ଭଲ ବୈଦ୍ୟ ଖୋଜିଲେ । କେହୁ କେହୁ ପରବୋଲୁ ନାଁ କହିବାରୁ ରଜା ଶବାରି ଗଜଢ଼ ପଠାଇ ତାକୁ ଡକାଇ ପଠାଇଲେ । ପରବୋଲୁ ରଜାଘର ଡକରା ପାଇ ମୁଣିଏ ହରଡ଼ା ଚୂନା ବାନ୍ଧି ଶିଷ୍ୟଟିଏ ସାଙ୍ଗରେ ଧରି ଶବାରି ଚଢ଼ି ସୁଲୁଡ଼ା ବାହାରିଲା ।

ରଜାଘର ଲକ୍ଷ୍ମାସପୁରକୁ ଦ ଦିନର ବାଟ । ଯାଇ ଯାଇ ଗୋଟେ ଗାଁରେ ରାତି ହୋଇଗଲା । ଦୈବକୁ ସେ ଗାଁରେ ଜଣକ ଘରେ ଜଣକର ହଇଜା ହୋଇଥାଏ । ସେଥିପାଇଁ ଘରବାଲା ବଡ଼ ବ୍ୟାକୁଳ ହୋଇଥାଏ । ସେ ଯହୁଁ ଶୁଣିଲା ଏ ଶବାରିରେ ଜଣେ ରାଜବୈଦ୍ୟ ଯାଉଛନ୍ତି, ତହୁଁ ଲସର ପସର ହୋଇ ଦୌଡ଼ିକରି ଯାଇ ବେକରେ ଲୁଗା ପକାଇ ହାତ ଯୋଡ଼ି ରାଜବୈଦ୍ୟଙ୍କୁ କହିଲା—ଅଜ୍ଞ । ଅଲସୁଅ

କପାଳକୁ ଗଲା। ବଡ଼େ କଷ୍ଟ ପରେ ଦୈବେ ଆପଣ ଆସିଛନ୍ତି। ମୋ ଘରେ ଗୋଟିଏ ହଇଜା ରୋଗୀ ପଡ଼ିଛି, ଆପଣ ଦୟା କରି ଆଜି ଚାଲନ୍ତୁ! ଚନ୍ତୁ ତାକୁ ଟିକିଏ ଦେଖନ୍ତୁ। ସଞ୍ଜ ତ ହୋଇ ଯାଇଥିଲା, ବୈଦ୍ୟ ମଙ୍ଗି ଗଲେ; ବସା ଖଟା ପାଇ ସେ ସେଠିକି ରହିଲେ। ହଇଜା ରୋଗୀକୁ ମଧ୍ୟ ସେହି ହରିଡ଼ା ଚୂନାରୁ ପାଚନ ଉଷୁମ ପାଣି ଅନୁପାନରେ ଦେଲେ। ଘରବାଲା କଅଁ ଜାଣିବ—ହରିଡ଼ା ଚୂନା ବୋଲି, ଔଷୁଅ ନା ଔଷୁଅ, ସେ ସମସ୍ତ ବୈଦ୍ୟଙ୍କ କଥା ଅନୁସାରେ ଉଷୁମ ପାଣିରେ ସେ ହରିଡ଼ା ଚୂନା ପାନକୁ ରୋଗୀକୁ ଚଢ଼ାଇ ଦେଲା। ହଗା ରୋଗକୁ ହରିଡ଼ା ଚୂନା ପଡ଼ିଲେ ଯାହା ହୁଏ, ସେଆ ହେଲା—ଘଡ଼ିଏ ଯାଇଛି କି ନା, ରୋଗୀ ଗୁହଁଳକୁ ମାଇଲା ଖାଲି ପାଣିପରି ନାହାଳ ଦେଲା, ଦେଖୁ ଦେଖୁ ଗୋଡ଼କୁ ହାତକୁ ବାଉଁଳା ଉଠିଲା। ଏହା ଦେଖି ଘରବାଲାର ହାଁକାସି ଉଠିଲା। ସେ ଦୌଡ଼ି ଆସି ବୈଦ୍ୟଙ୍କୁ ସବୁ ଅବସ୍ଥା କହିଲା। ବୈଦ୍ୟ ସବୁ ଶୁଣି ସାର କହିଲେ—ବୁଝିଲ, ମତେ ଜଣା ଯାଉଛି, ତୁମେ ସବୁ ରୋଗୀ ସେବା କରି ଜାଣ ନାହିଁ, ନୋଇଲେ ଔଷୁଅ କଅଁ ନ ଧରନ୍ତା? ତୁମେ ପାରିବ ନାହିଁ, ରୋଗୀକୁ ଆମ ବସାକୁ ପଠାଇ ଦିଅ, ଆମେ ସବୁ ବୁଝିବୁ।

ଘରବାଲା ବୈଦ୍ୟ କଥା ଅନୁସାରେ ରୋଗୀକୁ ଠେକାଠେକି କରି ଆଣି ବୈଦ୍ୟଙ୍କ ଜିମା କରି ଦେଲା। ବୈଦ୍ୟ ପୁଣି କହିଲେ—"ତୁମେ ମଧ୍ୟ ରୋଗୀ ପାଖେ ରହିବା ଦରକାର ନାହିଁ। ତୁମେ ଘରକୁ ଯାଅ, ରୋଗୀ ଆମକୁ ଲାଗିଲା।" ଏଣେ ରୋଗୀର ଅସମ୍ଭାଳ ଝାଡ଼ା ବସି ଯାଉଥାଏ। ବୈଦ୍ୟ ରୋଗୀର ଏ ଅବସ୍ଥା ଦେଖି ଭାବିଲେ—ଔଷଧ ଉପରେ ଔଷଧ ନ ପଡ଼ିଲେ ହଗା ଦବିବ ନାହିଁ। ଏହା ବୋଲି ଶିଷ୍ୟଙ୍କୁ କହିଲେ—ଅରେ ହେ! ରୋଗ ତ ବଳାବଳ, ଆଉ ଗୁହଁଳେ କଣ ହେବ? ରୋଗୀ ଯେତେ ଥର ଝାଡ଼ା ଯାଉଛି, ସେତିକି ଥର ଔଷଦ ଚଢ଼ାଇବୁଟି, ଦେଖିବା ରୋଗର କେତେ ବଳ ଅଛି? ରୋଗ ପୁଣି ହଟିବ ନାହିଁ?

ଶିଷ୍ୟ ଗୁରୁଙ୍କ ହୃଦ୍‌ଗତ ଭାବକୁ ଜାଣି ଔଷଧ ଚଢ଼ାଇଲେ, ଉକ୍ତ ଦ୍ରବ୍ୟ ପାନରେ ରୋଗୀ ନାରାୟଣ ପାଇଗଲେ । ଏହା ଦେଖି ଗୁରୁ ଶିଷ୍ୟଙ୍କୁ କହିଲେ—ଅରେ ! ସେ ତ ଏବେ ମରିଗଲା, କରିବା କଣ ? ଯା ଯେବେ ପ୍ରକଟ ହୁଏ, ଆମ କଥା ସରିଯିବ, ଆମେ ଆଉ ସଳୋଡ଼ା ଯିବା କଣ ? ଏବେ ଗୋଟିଏ କଥା କର, ଚାଲ, ଏହାକୁ ଭୁଲାଇ ଆସୁ ଦେ ଦହେଁଯାକ ଧରି ବଣରେ ଫିଙ୍ଗି ଦେଇ ଏଠୁ ସଡ଼ାସଡ଼ ଚମ୍ପଟ୍ ଖସି-ଯିବା । ନ ହେଲେ ଅମ ରୋଜଗାର ମାଟି ହୋଇଯିବ । ସେ ତ ଶିଷ୍ୟ ଲୋକ, ହଁ କି ଚୁଁ ନ କରି ଗୁରୁଙ୍କ କଥା ଅନୁସାରେ ମଙ୍ଗିଲେ । ଯେତେ-ବେଳେ ମୃଦାର ଟେକିଲେ, ସେତେବେଳେ ଗୁରୁ କଣ ଅଉ ଗୋଡ଼ଅଡ଼ ଧରନ୍ତେ ? ଶିଷ୍ୟ ଧଇଲେ ଯିମିତି ମୃଦାର ଟେକିଚନ୍ତି, ସିମିତି ସାଙ୍ଗେ ସାଙ୍ଗେ ମୃଦାର ପେଟରେ ବାକି ଯେତେ ମଳ ଥିଲା, ସେ ସବୁ ଭସୋକରା ବହିଅସି ଶିଷ୍ୟର ଦହମୁଣ୍ଡରେ ଲଗିଗଲା । ଶିଷ୍ୟ କରିବ କଣ ? ପାଟି ଭୁଣ୍ଡ ତ କରିବ ନାହିଁ, କୌଣସି ପ୍ରକାରେ ମୃଦାରଟାକୁ ବଣରେ ଫିଙ୍ଗି ଦେଇ ବୁଢ଼େ ମାଟି ଗୋବର ବୋଳି ହୋଇ ବୁଢ଼ବାଢ଼ ଗାଧୋଇ ଧାଧୋଇ ଗୁରୁଙ୍କ ସାଙ୍ଗେ ସଳୋଡ଼ା ବାହାରିଲେ । ଗୁରୁ ଶବାଗରେ ଶୋଇ କରି ଗୌଡ଼ଙ୍କୁ କହିଲେ—ଦେଖ, ସେଠି ବୁଢ଼ାଏ ଅଛି, ପୋଡେ ନାଦ ମାଡ଼ୁଛି । ତୁମେ ସବୁ ହୁଁ-ହାଁ ଡାକ ନ ପକାଇ ଚୁପ୍‌ଚାପ୍ ବେଗେ ବେଗେ ଚାଲ । ପୁଣି ସେଠି ମାଡ଼ିଲେ ଡାକ ପାରିବ । ତେବେହେଁ ସବୁ ସେହିପରି ଡାକ ନ ମାରି ସେଠି ପାଇବାଯାଏ ଚୁପ୍‌ଚାପ୍ ଚାଲିଲେ । ସେଠି ପାହିଲେ ବେଳକୁ ସବାରି ଯାଇ ଦଶ କୋଶ ବାଟରେ ହାଜର । ଏଣେ ଘରବାଲା ସକାଳୁ ଉଠି ରୋଗୀର ଅବସ୍ଥା ଦେଖିବାକୁ ଯାଇ ଦେଖେ ତ, ରୋଗୀ ନାହିଁ କି ବୈଦ ନାହିଁ । କାନ୍ଦ ବୋବାଇ ମୁଣ୍ଡ ବାଡ଼ାଇ ଖୋଜି ଖୋଜି ପଛକୁ ମୃଦାରଟାକୁ ବଣରୁ ପାଇଲା । କଣ କରିବ, ବୈଦକୁ ଚିହ୍ନେ ନାହିଁ, ଜାଣେ ନାହିଁ—କପାଳ ଆଦରି ରହିଲା । ତେଣେ

ବୈଦ୍ୟ ସିମାନେ ଘରୁ ନିକଟରେ ପହଞ୍ଚି ଗଲେ, ସିପିତ ସଃ ଯାତ୍ରା ରଜାଙ୍କୁ ଖବର ଦେଇଗଲା ।

ରଜା ଖବର ପାଇ ବୈଦ୍ୟଙ୍କୁ ଜୁଅସଙ୍କୁ ଡକାଇ ଆଣି ଅଗ ରୋଗୀ କଥା କହିଲେ । ବୈଦ୍ୟ ମଧ୍ୟ ସାଙ୍ଗେ ସାଙ୍ଗେ ଶିଷ୍ୟକୁ କହିଲେ— ଅରେ ହେ । ଏ ରୋଗୀଙ୍କୁ ଦ’ ପୁଡ଼ା ଔଷଧ ଦେଇ ଦେ । ସେହିପରି ଉଷୁମ ପାଣି ଅନୁପାନରେ ଔଷଧ ଦଅଯାଉ । ଏଥି ମଧ୍ୟରେ ବୈଦ୍ୟ ରଜାଙ୍କ ସାଙ୍ଗେ କଥାବାର୍ତ୍ତା କରୁଥାନ୍ତି, ଖବର ଆସିଲା—ଔଷଧ ଖାଇ-ବାରେ ରୋଗ ବଳଗଲା ହେଲା । ରଜା ଏ କଥା ଶୁଣି କହିଲେ—କଣ ବୈଦ୍ୟରାଜ । ଏପରି କଣ ହେଲା ? ବୈଦ୍ୟ ସଙ୍ଗେ ସାଙ୍ଗେ କହିଲେ— ମହାରାଜ ! ଜୁଅସରେ ଭଲ ସେବା ଲେଖା କେଉଁ ପାରି ନ ଥିବ; ସେଥିପାଇଁ ଔଷଧ ଗୁଣ କଲା ନାହିଁ । ଏବେ ସେ ରୋଗୀ ଦୁଇ ଜଣଙ୍କୁ ଅନ୍ୟ ବସାକୁ ନେଇ ଦିଅନ୍ତୁ । ମୁଁ ସବୁ ଭଲ ଲଗୁଲ ବୁଝି ଔଷଧ ଦେବ । ରଜା ତତ୍‌କ୍ଷଣାତ୍ ମଙ୍ଗିଗଲେ । ଶିଷ୍ୟ ତ ସେଇଠାରେ ଠିଆ ହୋଇ ସବୁ ଶୁଣୁଥିଲା, ସେ ଦେଖିଲା ଯେ ପୁଣି ସେହିପରି ଏ ରୋଗୀଙ୍କୁ ବସାକୁ ଆଣିଲେଣି, ସେଥି ତ କଷ୍ଟେ ମରିବ, ମୁଁ ତ ଶିଷ୍ୟ, ପରେ ତ କଷ୍ଟେ ଗୋଡ଼-ଅଡ଼ ଧରିବାକୁ କହିବ, ମୁଁ ଅଉ ଗୁରୁସ୍ଥାନ ହୋଇପାରିବ ନାହିଁ । ଏହା ବିଚାରି ଶିଷ୍ୟ କହିଲା—ହେ ଗୁରୁ ! ମୁଁ ଆଜ ଗୋଡ଼ଅଡ଼ ଧରିବ ନାହିଁ ।

ଏହା ଶୁଣି ରଜା କହିଲେ—କଣ, କଣ, ଗୋଡ଼ଅଡ଼ ଧରିବ ନାହିଁ କଣ ? ଶିଷ୍ୟ ମୁହଁରୁ ତ ଏ କଥା ବାହାରି ପଡ଼ିଲା,ସେ ଆଉ ଯାଏ କୁଆଡ଼େ ? ସେ ଯେତେ ବାରବାରି କଲେ ମଧ୍ୟ ରଜା ସେ କଥା ନ ଛାଡ଼ନ୍ତି । ପଛକୁ ଶିଷ୍ୟ ନାଚାର ହୋଇ ବାଠ ହଇଜା ରୋଗୀ କଥା କହିଲା—ଅଣ୍ଣ, ବାଠରେ ଏହିପରି ଗୋଟେ ହଇଜା ରୋଗୀଙ୍କ ଔଷଧ ଦେବାରେ ତାର ଅଧିକ ହେବାରୁ ତାକୁ ବସାକୁ ଆଣିଲୁ, ପୁଣି ଔଷଧ ଦେବାରେ ସେ

ମଲେଣି । ମୁଦାର ଓ ଲମ୍ବ ଡେଲକୁ ମୁଁ ତ ଶିଷ୍ୟ, ମୋରି ଭାଗ୍ୟରେ ଗୋଡ଼ ଅଡ଼ ଧରିବା ପଡ଼ିଲା । ଅଜ୍ଞ ! ମିଛିଆ ମୁଁ ତାକୁ ଉଠାଇଛୁ, ସିମିଛ ସାଙ୍ଗେ ସାଙ୍ଗେ ଗୁନ୍ଦସ୍ନାନ ହୋଇଗଲ । ସେୟୁ ତ ଏବେ ସିମିଛ ହେଲଣି, ମୋର ଉପରେ ତ ପୁଣି ଗୋଡ଼ଅଡ଼ ପଡ଼ିବ, ସେଇଥିପାଇଁ ମୁଁ ଏ କଥା କହିଲି । ରଜା ଯହୁଁ ଏ କଥା ଶୁଣିଲେ, ତହୁଁ ସାଙ୍ଗେ ସାଙ୍ଗେ କହିଲେ—ହେଁ, ତେବେ ଇମିଛ ବୈଦ ! ଅରେ ! କିଏ ଅଛ ରେ ? ଏ ବୈଦକୁ ଗୃବୁକ ମାର ମାର ରାଜ୍ୟ ପାର କର ଦେକ ଥିସ । ସାଙ୍ଗେ ସାଙ୍ଗେ ବୈଦ ପିଠିରେ ହେଲ ଗୃବୁକ ମାଡ଼ । ପିଠି ଫାଟି ଯାଇ ରକ୍ତ ଫସ୍ ଫସ୍ ବାହାର ଯାଉଥାଏ । ତାକୁ ଏହିପରି ମାରି ରାଜ୍ୟ ପାରି କରଦେଲେ । ବିଚରା ପିଠିରୁ ଘା ଶୁଖୁ ଶୁଖୁ ଚାରି ମାସ ବିତିଗଲା । ପିଠିରୁ ଛାଲଟେ ଛଡ଼ିଗଲା । ଏତକ ଯହୁଁ ହୋଇଗଲା, ପରବୋଲ ସିମିଛ ମୁଣ ଫୁଣି ଫିଙ୍ଗିଦେଇ ଅଜ ବୈଦବୃତ୍ତି କରିବ ନାହିଁ ବୋଲି ନିୟମ କଲା । ସେହି ଦିନଠାରୁ ତା ବୈଦବୃତ୍ତି ଗଲା । ସେ ସେହି ଦିନଠାରୁ ବୁଝିଲା ଯେ ବୈଦ ହବା ସହଜ କଥା ନୁହେ । କିଛି ନ ଜାଣି ନ ଶୁଣି ନ ପଢ଼ି ବୈଦବୃତ୍ତି କଲେ ପଛକୁ ଏହିପରି ଦଣ୍ଡ ଭୋଗିବାକୁ ହୁଏ । ଯାହା ଦେଖି ଅଜ ଯେ ଦରପାଠୁଆ, ଅଧାପାଠୁଆ, ଅପାଠୁଆ ବୈଦ ଥିଲେ ସେ ସବୁ ବୃତ୍ତି ଛଡ଼ିଦେଲେ । ସେହି ଦିନଠାରୁ ଭଲ ଭଲ ବୈଦ ବାହାରିଲେ ।



# ଭୁଜପୁର ନିଶାପ

ଭୁଜପୁର ବୋଲି ଗୋଟିଏ ରାଜ୍ୟ ଥିଲା । ଖଗେଶ୍ୱର ବୋଲି ସେଥିରେ ଜଣେ ରଜା ଥିଲେ । ଖଗେଶ୍ୱର ପ୍ରକୃତରେ ଖଗା । ବଗେଶ୍ୱର ରଜାଙ୍କୁ ଗୃହୁଁ ବଗେଶ୍ୱର ମନ୍ତ୍ରୀ ମିଳିଥାନ୍ତି । ଖଗାରୁ ବଗା ଯେପରି ବିଧାତା ଘଟଣା । ରାଜାଙ୍କର ନ୍ୟାୟ ନିଶାପ ତ ପୁଣି ରଜା ମନ୍ତ୍ରୀ ବୁଝିବେ । ଯେଉଁ ଦିନଠାରୁ ଖଗା ବଗା ଦୁହେଁ ରାଜ୍ୟ ବୁଝିଲେ, ସେହି ଦିନଠାରୁ ଜଣେ ଚୋରି କଲେ ଆଉ ଜଣେ ଦଣ୍ଡ ପାଇଯାଏ । କେହି ଯେତେବେ ଭଲ କାମ କରେ, ତେବେ ଆଉ କେହି ପୁରସ୍କାର ପାଇଯାଏ । ତାଙ୍କ ନ୍ୟାୟ ବୁଝାମଣାରେ କାହାର କପାଳ ଫାଟେ, କାହାର ଦାନ୍ତ ମଚକେ, କେହି ଅବା ଶୃଙ୍ଖଳରେ ବାନ୍ଧିଅ ପଡ଼େ, ତାର କିଛି ଠିକଣା ନାହିଁ । ଏହିପରି କେତେ କଣ ହୋଇଯାଏ ।

ଥରେ ପଞ୍ଚାଏ ଚୋର ଦିନେ ସନ୍ଧ୍ୟାରେ ଚୋରି କରିବାକୁ ଗଲେ । ଚୋରଯାକ ବୁଝିଶୁଝି ଜଣାନ ହରୁ ମହାଜନ ଘରେ ପହଞ୍ଚିଲେ । ମହାଜନ ଘରେ ଧନଦୌଲତ କିଛି କମ୍ ନୁହେଁ । ତା ଘର ଚଣ୍ଡି ଗଠାରେ ଛଅର । ଚୋରମାନେ ଚଢ଼ି ଅଟରେ ଯାଉଥାନ୍ତି । ସେତେବେଳକୁ ମହାଜନ ଘରେ ସମସ୍ତେ ଖାଇପିଇ ଦୁଆରଦେଇ ନିଦ୍ରା କରି କାଳ ନିଘୋଡ଼ ନିଦରେ ଶୋଇଥାନ୍ତି । ଚୋରମାନେ ବାଡ଼ିଆଡ଼, ଦାଣ୍ଡଆଡ଼ ବୁଲି ତା ଘରେ ପଶିବାକୁ ବହୁତ ଚେଷ୍ଟା କଲେ; ଦୁଆରବାଟେ ପଶି-ପାରିଲେ ନାହିଁ । ତାଙ୍କ ପାଖରେ ତ ସିନ୍ଧିକାଠି ଥିଲା, ସେଥିରେ ସେ ସିନ୍ଧି କଲେ । ସିନ୍ଧି କରୁ କରୁ କାନ୍ଥଟା ଅଜାଡ଼ ହୋଇପଡ଼ିଲା । ଦୈବାତ୍ ଚୋରଙ୍କ ଭିତରୁ କାହାରି କିଛି ଖରାପ ହୋଇ ନାହିଁ । ତା ପରେ ସେମାନେ ମହାଜନ ଘରେ ପଶି ଯାହା ନବାର ତାହା ନେଲେ ।

ନାହିଁ ଅତି ଦିନ ସେଣୁ ଚୋରମାନଙ୍କ ଏକଦମକ ରାଜାଙ୍କ ପାଖରେ ପହଞ୍ଚି ଆପତ୍ତି କଲେ—ଆଜ୍ଞା ! ଚୋରି ଆମର କାରବାର, ଏତେ ସବୁ ଚୋରି କଲେ ଚଳୁ । ମୁ ରାତିରେ ଅନାମ ସାଧୁ ମହାଜନ ଘରକୁ ଚୋରି କରିବାକୁ ଯାଇଥିଲି । ସିନ୍ଧି କାଟୁ କାଟୁ କାନ୍ଥଟା ପଡ଼ିଗଲା । ଯୋଗକୁ ମିଳା ଅମ ଚିଡ଼ିକୁ ବାହାରି ଯାଇ ଖେଳି ନାହିଁ, ନୋଇଥିଲେ ତ ନରହତ୍ୟା ହୋଇଥାନ୍ତା । କାନ୍ଥଟି ଯେବେ ସେ ଦମ୍ଭିଲା କରି ଗଢ଼ିଥାନ୍ତା, ତେବେ କାନ୍ଥ କାହିଁ ଭାଙ୍ଗିଥାନ୍ତା ? ତେବେ ଏଥିପାଇଁ ଅନାମ ସାଧୁ ଦୋଷୀ ହେବ କି ନାହିଁ ?

ରଜା ଚୋରଙ୍କ ଆପତ୍ତି ଶୁଣି ବଗେଶ୍ୱର ମନ୍ତ୍ରୀଙ୍କି ଚାହିଁ କହିଲେ—ହେ ମନ୍ତ୍ରୀ ! ଏ ଚୋରମାନଙ୍କ ଯାହା କହିଲେ, ଏ କଥା ତ ବୁଝିବାର କଥା । ବଗେଶ୍ୱର କହିଲେ—ନ ବୁଝିବା କିମିତ ? ନ ହେଲେ ଏ ରାଜ୍ୟ ଚଳିବ କିପରି ? ଏ ନରହତ୍ୟା ମକଦ୍ଦମା, ଅଣି ମୁଣ୍ଡ ଦେଲେ ଚଳିବ କି ? ମୁଁ କହେ—ସାଙ୍ଗେ ସାଙ୍ଗେ ଅନାମ ସାଧୁକୁ ତଲବ କରି ତାକୁ ପଚାର ଯାଉ, ସେ ଦୋଷୀ କି ନୁହେ । ସାଙ୍ଗେ ସାଙ୍ଗେ ପିଅଦା ଯାଇ ଅନାମକୁ ଧରି ଅଣିଲା । ଅନାମ ପହଞ୍ଚିବାରୁ ରଜା ପଚାରିଲେ—କିଓ ଅନାମ ! କାଲି ରାତିରେ ତୁମ ଘରେ ଚୋରି ହୋଇଥିଲା ? ଅନାମ ହଁ କଲା । ଅଚ୍ଛା, ତୁମର ଦୋଳ କାନ୍ଥରେ ସିନ୍ଧିଗାତ ହୋଇଥିଲା, ସେ ଭଲ ଭାଙ୍ଗି ପଡ଼ିଛି ?

ଅନାମ କହିଲା—ହଁ କୁଣ୍ଡି ପଡ଼ିଲା, ସେଥିକି ମୋର ଦୁଃଖ ନାହିଁ ଅଛି । ଚୋରେ ମୋର ସବୁ ବୋହି ନେଇ ଯାଇଚନ୍ତି, ଘରେ ଅଉ ରହ କେନା ଖଣ୍ଡେ ଛାଡ଼ି ଯାଇ ନାହାନ୍ତି । ରଜା କହିଲେ—ସେ କିଛି କଥା ନୁହେ, ଅଜ ଧନ ଯାଇଚି, ପୁଣି କାଲିକି ହେବ, ମଣିଷ ମରିଗଲେ ତ ଅଉ ଫେରି ଆସିବ ନାହିଁ ? କାଲି ଏବେ

ତୁମର କାନ୍ଥ ଯୋଗୁଁ ଏ ଦୁଇ ଜଣ ଯାକ ଚୋରର ମରିଥାନ୍ତେ, ତୁମେ ଯେବେ କାନ୍ଥକୁ ଦମ୍ଭ କରି ଦେଇଥାନ୍ତ, ତେବେ ଏତେ ଦୂର କଥା କାହିଁକି ଘଟିଥାନ୍ତା ? ଏବେ ହବ କଣ ? ଏ ଅପରାଧ ଯୋଗୁ ତୁମକୁ ଏବେ ଶୂଳୀ ଦଣ୍ଡ ଦିଆଯିବ ।

ଅନାମ କହିଲା—ଆଜ୍ଞା, ଏବେ ଏଇ ବିଚାର ହେଲା ? ସେ କଲେ ଚୋରି, ମୋର ଗଲା ଧନ, ଚୋର ପାଇବେ ନାହିଁ ଦଣ୍ଡ, ମୁଁ ପାଇବି ଦଣ୍ଡ ? ରଜା କହିଲେ—ତୋର ବୁଦ୍ଧି କେତେ ଯେ ତୁ ବିଚାର ବୁଝିବୁ ? ଅରେ ଓଲୁ ! ଚୋରି କରିବା ଚୋରଙ୍କର ପେଶା, ନୋହିଲେ ସେ ପିଲାକୁଟୁମ୍ବ ପୋଷିବେ କିପରି ? ଏଥିରେ ଆଉ ତାଙ୍କର ଦୋଷ ରହିଲା କୁଆଡ଼ ? ଏବେ ତୋର ଦୋଷ କି ତାଙ୍କର ଦୋଷ ବୁଝିଲୁ ତ ? ଅନାମ ଦେଖିଲା ଯେ—ରଜା ତ ବୁଝିବାକୁ ଖମ୍ବଅଳ, ଆଉ କାଳି ଆଗେ ମୂଳା ଚୋବାଇ ହବ କଣ ? ଏବେ ଶୂଳୀରୁ ଖଲାସ ପାଇବା ବିଚାର ଦରକାର । ନ ହେଲେ ଏ ଟଗା କଷ୍ଟେ ଶୂଳୀରେ ଚଢ଼ାଇ ଦବ । ଏହା ଭାବି ଅନାମ କହିଲା—ଆଜ୍ଞା ! କାନ୍ଥ ଭାଙ୍ଗି ପଡ଼ିଲା, ଏଥିରେ ମୋର ଦୋଷ କଣ ? ମୁଁ ତ କାନ୍ଥ ଦେଇ ନ ଥିଲି, ମିସ୍ତ୍ରୀ ଦେଇଥିଲେ । ମିସ୍ତ୍ରୀ ଦୋଷୀ ନ ହୋଇ ମୁଁ କିପରି ଦୋଷୀ ହେବି ?

ରଜା ଏହା ଶୁଣି ବଡ଼ ମନ୍ତ୍ରୀଙ୍କୁ ଚାହିଁ କହିଲେ—ହୟୋ ମନ୍ତ୍ରୀ ! ସତ କଥା ତ, ଏଥିରେ ଅନାମର ତ କିଛି ଦୋଷ ହେଉ ନାହିଁ; ତେବେ ମିସ୍ତ୍ରୀଙ୍କି ତଲବ କର । ସାଙ୍ଗେ ସାଙ୍ଗେ ମିସ୍ତ୍ରୀଙ୍କି ତଲବ କରାଗଲା । ମିସ୍ତ୍ରୀମାନେ ପହଞ୍ଚିବାରୁ ପଚରାଗଲା—ତୁମେ ସବୁ ଅନାମ ସାହି କାନ୍ଥ ଗଢ଼ିଥିଲ ? ମିସ୍ତ୍ରୀମାନେ ମାନି ଯିବାରୁ ହୁକୁମ ହେଲା—ତୁମେ ସବୁ ଶୂଳୀ ଦଣ୍ଡ ପାଇବ । ମିସ୍ତ୍ରୀମାନେ ଏ ସବୁ କଥା ଜାଣି ନ ଥିଲେ; ତେଣୁ କାରଣ ପଚାରିବାରୁ କୁହାଗଲା—ତୁମେ ସବୁ କାନ୍ଥ

ଅଦମ୍ଭ କରି ଗଢ଼ିଥିଲ, ଏ ଚୋରମାନେ ସିନ୍ଧ କ ଦେଲେ ସେ ଭାଙ୍ଗି ପଡ଼ନ୍ତା । ଯେବେ ମଣିଷ ମରିଥାନ୍ତେ, ତେ ନରହତ୍ୟା ହୋଇଥାନ୍ତା କି ନା ?

ମିସ୍ତ୍ରୀମାନେ ରଜାଙ୍କ ବୁଦ୍ଧି ବଗୃର ସବୁ ବୁଝି ନେଇ କହିଲେ— ଆଜ୍ଞା ! ହଁ, ଅମେ ଦଣ୍ଡ ପାନ୍ତୁ । କିନ୍ତୁ ଅମର ଏଥିରେ ଦୋଷ ନାହିଁ । ତାହାଁକି ନା, ଅମେ କାନ୍ଥ ଦେବା ବେଳେ ଛମୁଙ୍କ ମାହାଣ୍ଡିମାନେ ସେହି ବାଟ ଦେଇ ଯିବାରୁ ଅମେ ତାଙ୍କ ଅଳଙ୍କାର ଶବ୍ଦ ଶୁଣି ତାଙ୍କୁ ଟିକିଏ ଚାହିଁ ଦେଇଚୁ, ସେତିକି ବେଳେ କାନ୍ଥ ହାତରେ ଦାଉଜଗମ ରହି ଯାଇଥିଲେ ରହି ଯାଇଥିବ । ମାହାଣ୍ଡିମାନେ ଯେବେ ସେ ବାଟରେ ଯାଇ ନ ଥାନ୍ତେ, ତେବେ ଅମେ ତାହାଁଙ୍କ ପଛକୁ ଚାହିଁ ଥାନ୍ତୁ ?

ରଜା କହିଲେ—ସତ କଥା, ଏଥିରେ ତ ସ୍ତ୍ରୀଙ୍କର କିଛି ଦୋଷ ନାହିଁ । ଦୋଷ ମାହାଣ୍ଡିଙ୍କର । ତେବେ ତାଙ୍କୁ ତଲବ କରାଯାଉ । ତଲବ ଗଲା, ମାହାଣ୍ଡି ଅସିଲେ, ରଜା ମୋକଦ୍ଦମାର ସବୁ ହାଲ ତାଙ୍କୁ ବୁଝାଇ ଦେଲେ । ଶେଷରେ କହିଲେ—ତୁମେ ସବୁ ଦେଖୁଚ, କାନ୍ଥ ଦଅ ହଉଚି, ସେ ବାଟରେ ଯିବା ମୂଳରୁ ଭୁଲ୍ ହେଉଛି; ଯେବେ ଗଲ, ଝମର ଝମର ହୋଇ ଗଲ କାହିଁକି ? ତୁମ ଝମର ଝମର ଶବ୍ଦ ଶୁଣିବାରୁ ସିନା ମିସ୍ତ୍ରୀମାନେ ପଛକୁ ଚାହିଁଲେ, ନୋଇଲେ ସେ କାହିଁ ପଛକୁ ଚାହାନ୍ତେ, କାହିଁକି ବା କାନ୍ଥ ଦାଉଜଗମ ହୁଅନ୍ତା ? ତୁମର ଦୋଷରୁ କାନ୍ଥ ପଡ଼ିଲା, ମଣିଷ ମରିବା ଅଉ କେତେ ଦୂର ? ଏଥିପାଇଁ ତୁମେ ଶୂଳୀ ପାଇବ ।

ମାହାଣ୍ଡିମାନେ ରଜାଙ୍କ ଓଲଟା ବୁଝାମଣା ଶୁଣି କହିଲେ— ଅଜ୍ଞା ! ଅମେ ତ ଅଳଙ୍କାର ଗଢ଼ି ନାହୁଁ, ବଣିଆ ଯେବେ ଇସିତ

ବାଟେଙ୍କଣୀ ଅଳଙ୍କାର ଗଢ଼ି ନ ଥାନ୍ତା, ତେବେ ଅଜ ବାଙ୍ଗନ୍ତା କିଅଡ଼ୁ ? ଛମୁ ନିଜେ ବୁଝନ୍ତୁ—ଏଥିରେ ମୋର ଦୋଷ, ନା ବଣିଅର ଦୋଷ ?

ରଜା ସିମିତି ଏତକ ଶୁଣିଗଲେ ସିମିତ ସାଙ୍ଗେ ସାଙ୍ଗେ କହିଲେ—ଶୁଣ ମନ୍ତ୍ରୀ ! ଏମାନେ ଯାହା କହୁଛନ୍ତି, ଉଚିତ କଥା । ତେବେ ବଣିଅର ପ୍ରକୃତ ଦୋଷ । ଏବେ ବଣିଅକୁ ଡକାଇ ହଜ । ଡକାବ ଗଲା, ବଣିଅ ଅଇଲା । ରଜା କହିଲେ—ତୁମେ ଯେବେ ବାଟେଙ୍କଣୀ ଅଳଙ୍କାର କରି ନ ଥାନ୍ତ, ତେବେ କଅଁ ବାଟନ୍ତା ? ମିସ୍ତ୍ରୀ କଅଁ ଗୃହ୍ଣାନ୍ତେ ? ସିନ୍ଧ ଫଟେଲ ମଧ କାନ୍ଥ କଅଁ ଭାଙ୍ଗନ୍ତ ? ଭଙ୍ଗା କାନ୍ଥରେ ଯେବେ ମଣିଷ ମରିଥାନ୍ତେ, ତେବେ କିଏ ଦୋଷୀ ହୋଇଥାନ୍ତା ? ମଲା ମଣିଷ ଅଉ ଫେରି ବଞ୍ଚିଯାନ୍ତେ ନାହିଁ ? ତେବେ ଏଥିପାଇଁ ତୁମେ ଦୋଷୀ ନ ହେବ କାହିଁକି ? ଏଥିକି ତୁମେ ଶୂଳୀ ଯାଇବ ।

ବଣିଅ କହିଲା—ଅଜ୍ଞ, ଛମୁ ହୁକୁମରେ ତ କାହାର ହାତ ନାହିଁ, ଯେତେବେଳେ ଦୋଷୀ ହେଲଣି, ନିଶ୍ଚୟ ଦଣ୍ଡ ପାଇବ । ତେବେ ଗୋଟିଏ ଗୁହାରି କରିବାର ଅଛି । ଗୁହାରି କଣ କି ? ମୁଁ ଯୁଁ ହଡିଅରେ ବାଟେଙ୍କଣୀ ଅଳଙ୍କାର ତିଆର କରୁଚି, ସେ ହଡିଅର ତ ମୁଁ ଗଢ଼ି ନାହିଁ, କମାର ଗଢ଼ିଚି—କମାର ଯେବେ ସିମିତି ହଡିଅର କରି ନ ଥାନ୍ତା, ତେବେ ମୁଁ କେମିତି ବାଟେଙ୍କଣୀ ଅଳଙ୍କାର କରିପାରନ୍ତି ? ଏଥିରେ ମୁଁ ଦୋଷୀ କି କମାର ଦୋଷୀ, ଛମୁ ବୁଝାମଣା କରି ଦେଖନ୍ତୁ

ରଜା ବଣିଅ କଥା ଶୁଣି ଟିକିଏ କଣ ଭାବି ମନ୍ତ୍ରୀଙ୍କୁ ଚାହିଁ କହିଲେ—ମନ୍ତ୍ରୀ ! ବଣିଅ ଯାହା କହୁଛି, ଶୁଣିଲ ତ ? ସତରେ ଏଥିରେ ତ ବଣିଅର ଦୋଷ ଜମାରୁ ନାହିଁ, ଦୋଷୀ ହେଉଚି କମାର । ଦଣ୍ଡ ପାଇଲେ ପାଇବ କମାର ।

ମନ୍ତ୍ରୀ ତ ବଡ଼ ବୁଦ୍ଧିମନ୍ତ। ସେ ମଧ୍ୟ ଚତୁରକ କଥା ବୁଝିପାରିଲେ। ସାଙ୍ଗେ ସାଙ୍ଗେ କହିଲେ—ଅଜ୍ଞା, ଆମ୍ଭ ତ ସାକ୍ଷାତେ ଧର୍ମ, ଏତେଇଁ କେଣ ଧର୍ମରୁ ଅଉ ଲୁଚି ରହନ୍ତା? ଯାହା ଧର୍ମ୍ମ, ତାହା ମନରୁ ବାହାର ହେଉଛି। ଆମେ ଯେବେ ସେତକ ବିଚାର ନ କରି ଚୋରଟିକୁ ଶୂଳୀ ଦେଇ ମାରିଥାନ୍ତେଇଁ, ତେବେ ଯୁଗ ଯୁଗକୁ ଅମର କୀର୍ତ୍ତି ରହିଯାଇ-ଥାନ୍ତା। ତେବେ କମାରକୁ ଡକାଯାଉ। ସାଙ୍ଗେ ସାଙ୍ଗେ ପିଅଦା ଗଲେ, କମାର ଧରି ହୋଇ ଆସିଲେ।

ରଜା କମାରକୁ କହିଲେ—କାଲି ରାତିରେ ଅନାମ ସାହୁ ଘରେ ସିନ୍ଧି ହେବା କଥା ଜାଣ ତ? ସିନ୍ଧି କରୁ କରୁ କାନ୍ଥ ପଡ଼ିଲା, ଦୈବେ ଚୋରଙ୍କ ଉପରେ ନ ପଡ଼ି ଅଲକ୍ଷେ ରହିଗଲା ନୋହିଲେ ଅଠ ଦଶ ଜଣ ମଣିଷ ମରିଯାଇଥାନ୍ତେ। ମଣିଷ ମଲେ କି ଅଉ ବଞ୍ଚେ? ଏ ସାମାନ୍ୟ କଥା ନୁହେଁ, ମଣିଷ ମାରିବାର ଅଉ କେତେ ଦୂର ଥିଲା କି? ଏବେ ବୁଝାଶୁଝା ହେବାରେ ତୁମର ଉପରେ ଦୋଷ ପାଉଛି। ଏଥିକି ତୁମେ ଶୂଳୀ ଦଣ୍ଡ ପାଇବ।

କମାର କଥା ଏହା ଶୁଣି ଅବାକାବା ହୋଇ କହିଲା—ଅଜ୍ଞା, ଏ କି କଥା? ଚୋର କଲା ଚୋରି, ମୁଁ ପାଇବି ପ୍ରାଣଦଣ୍ଡ? ଏ କେଣ ଧର୍ମ ବୁଝାମଣା ହେଲା?

ରଜା କହିଲେ—ଅରେ ଉଲୁ! ତୁ ବାଟେଣୀ ଅଲଙ୍କାର ଉଅର କରିବା ଭଳି ହାଡିଅତ କଲୁ ବୋଲି ସିନା ବଣିଅ ବାଟେଣୀ ଅଲଙ୍କାର କଲା, ତାକୁ ଅମ ମାହାଶଗ ପିନ୍ଧି ସେ ବାଟରେ ଯିବାରୁ ମିସ୍ତ୍ରୀମାନେ ଝୁମୁ ଝୁମୁ ଶବ୍ଦ ଶୁଣି ପଛକୁ ଚାହିଁଲେ, ଚାହିଁବାରୁ ସିନା କାନ୍ଥ ଦରକଗମ ହେଲା। ନ ହେଲେ ସିନ୍ଧି କଲାବେଳେ କାହିଁକି କାନ୍ଥ ଭାଙ୍ଗିପଡ଼ନ୍ତା?

ଏତେ ଦୂର କାହିଁକି           ଯାଇଥାନ୍ତା ? ଏବେ ବୁଝିଲୁ ତ ଦୋଷ ତାହାର ହେଲା ?

ଏଥର ଏ ଧର୍ମ ବଗୁର ଶୁଣି ହେବଲା—ରଜାକୁ ଗୁହିଁ ମନ୍ତ୍ରୀ କହିଲେ, ଏଠେଇଁ କଣ କିଛି ବଗୁର ଅଛି ? ଅଜ ଗୁହିଁଲେ କଣ ହେବ, ଏ ବିଗୁରକୁ ଗୁହିଁ ବୁଝିବେ ନ କଲେ ହବ ନାହିଁ । ତହୁଁ କହିଲା—ଅଜ୍ଞ, ଛାମୁ ଯାହା ବୁଝିଚନ୍ତି ସେଥିରେ ଅଜ କାହାର ଭୁଣ୍ଡମୁଣ୍ଡ ଅଛି ? ମୋର ଯେତେବେଳେ ଷୋଳଅଣା ଦୋଷ ହେଲାଣି, ସେତେବେଳେ ମୁଁ ଦଣ୍ଡ ପାଇବାର ଯୋଗ୍ୟ । ହେଲେ କଣ ହେବ, ଅଜ୍ଞ ! ମୋର ଗୋଟିଏ ଅପତ୍ତି କରିବାକୁ ଅଛି । ଅପତ୍ତି କଣ କି ଅଜ୍ଞ । ପିଲାଦିନରୁ ଲୁହା ଅଜଟିବା, ଲୁହା ବାଙ୍କେଇବା କାମ କରିବାରେ ମୋର ଦେହ ଗୋଟାପଣେ ହେଲେ । ସେଇ ଅଭ୍ୟାସରୁ ମୋର ଦିହ ତ ଥପ୍ ହେବ ନାହିଁ । ଅଜ ଶୂଳୀ ଦେବାର କିପରି ? ସେତେବେଳେ ତ ଦଣ୍ଡ ହେବା ଯେ ଶୂଳୀରେ ବସି ହବ ନାହିଁ—ଅଜ ଦଣ୍ଡ ଦଅଯିବ କିପରି ?

ରଜା ଏହା ଶୁଣି ବଡ଼ ମନ୍ତ୍ରୀଙ୍କୁ କହିଲେ—କଣ ମନ୍ତ୍ରୀ ! ସବୁ ଶୁଣିଲ ତ ? ଯେ ତ ଏବେ ମହାଅଡୁଆ ପଡ଼ିଲାଣି, ଯାକୁ ଦଣ୍ଡ ଦୋଇ ହବ ନାହିଁ । ଏତେ ବଡ଼ ଦୋଷ ଘଟିଗଲା, କିଏ ତ ପୁଣି ଜଣେ ଦଣ୍ଡ ପାଇବ, ନ ହେଲେ ଢାଲକାଳକୁ ଅମର ନିନ୍ଦା ରହିଯିବ । ତେବେ କଣ କରିବା ?

ବଗେଶ୍ୱର ମନ୍ତ୍ରୀ କହିଲେ—ଅଜ୍ଞ, ଦଣ୍ଡ ଅଜ ବନ୍ଦ ହୋଇ-ପାରେ ? ତେବେ ଜଣେ ଅପୃବାଳ୍କ କୁଠଇଁ ଖୋଜେଇ ଅଣିଲେ ହବ ।

ରଜା କହିଲେ—ଏ ମକଦମା ତ ବାକି ରଖିଲେ ଚଳିବ ନାହିଁ, ତୁମେ ସଙ୍ଗେ ସାଙ୍ଗେ ଯାଇ ରାଜ୍ୟଯାକ ବୁଲି ଅଧଳ ଥିବ

ଦନ୍ତବାଲ୍ପ ଜଣେ କାହାଠାରୁ ଧରି ଆଣି । ରଜାଙ୍କ ହୁକୁମରେ ବଡ଼ା ମନ୍ତ୍ରୀ ଅସ୍ଥି ଦନ୍ତବାଲ୍ପ ଖୋଜି ବାହାରିଲେ । ରାଜ୍ୟ ଗୋଟାକଯାକ ବୁଲି ବୁଲି କାହାରିକୁ ପାଇଲେ ନାହିଁ । ଯାହାକୁ ଦେଖିଲେ, ସେ କିଛି କାମରେ ଅଥର୍ବ । ପଛକୁ ବୁଲି ବୁଲି କାହିଁରେ କାହ୍ନ ନ ହେବାରୁ ଘରକୁ ଫେରିଲେ । ଫେରିବା ବାଟରେ ଖଣ୍ଡେ ବଣ ପଡ଼ିଲା । ସେ ବଣରେ ଅସୁ ଅସୁ ଦେଖିଲେ—ଗୁରୁ ଶିଷ୍ୟ ଦୁଇଜଣ ଗୋଟେ ଗଛ-ମୂଳରେ ଆଖି ମୁଦି ସ୍ଥିର ହୋଇ ଏକଧ୍ୟାନରେ ବସିଛନ୍ତି, ହଲଚଲ କିଛି ନାହିଁ । ମନ୍ତ୍ରୀ ସେ ଦୁଇଜଣଙ୍କୁ ଦେଖି ମନେ ମନେ ବଡ଼ ଖୁସି ହୋଇ ତାଙ୍କ ପାଖକୁ ଯାଇ ତାଙ୍କୁ ପଚାରିଲେ—ହଇହୋ ! ତୁମର ଅସ୍ଥି ଦନ୍ତ ତ ? ଗୁରୁ ଶିଷ୍ୟ ବଡ଼ା ମନ୍ତ୍ରୀଙ୍କର ଏ ପ୍ରଶ୍ନ ଶୁଣି କାବା ହୋଇ ପଚାରିଲେ—କଅଣ ! ଅସ୍ଥି ଦନ୍ତ କଣ ? ତାହା ଶୁଣି ମନ୍ତ୍ରୀ ଚୋରଙ୍କ କଥା ସବୁ କହିଲେ । ପଛକୁ କହିଲେ—ସେ ଯାହା ହେଉ ହେଲା । ଏବେ କମାର ଉପରେ ପୁଣି ଦୋଷ ଲାଗିଲା । ସେ ଫାଶି ଶୂଳୀ ଯିବାର କଥା । ହେଲେ ବାଣି ହବ, କମାରର ଅସ୍ଥି ଦନ୍ତ ନୁହେଁ । ସେହି ହେତୁରୁ ଶୂଳୀରେ ବସିବାବେଳକୁ ହଲଚଲ ହବ । ସେଥିରୁ ତାକୁ ଶୂଳୀ ଦିଆଯାଇ ପାରିବ ନାହିଁ । କିଏ ତ ପୁଣି ସେ ଦୋଷପାଇଁ ଶୂଳୀ ଯିବ । ସେଥିପାଇଁ ଅସ୍ଥି ଦନ୍ତବାଲ୍ପ ଖୋଜା ପଡ଼ିଛି ।

ଗୁରୁ ଶିଷ୍ୟ ଦୁହେଁ ବଡ଼ା ମନ୍ତ୍ରୀଠାରୁ ସୃଷ୍ଟିଛଡ଼ା ବୃତ୍ତାନ୍ତ ଶୁଣି ବୁଝିଲେ ଯେ, ଏ ରାଜ୍ୟର ଲୋକେ ଅଳ୍ପ ବୁଦ୍ଧିବୁଦ୍ଧା । ତାଙ୍କୁ ଗୁହଁ ମନ୍ତ୍ରୀ ମଧ୍ୟ ମିଳିଛି । ଯେ ଇଚ୍ଛା ସେ ଏ ରଜା ମନ୍ତ୍ରୀଙ୍କୁ ଠକି ପାରେ । ବୁଦ୍ଧି ଖରଚ କଲେ ଏ ଶୂଳୀ ଯିବାରେ ଲାଭ ଛଡ଼ା କ୍ଷତି ନାହିଁ । ଏହା ବିଚାରି ଗୁରୁ ଶିଷ୍ୟ ଦୁହେଁ କହିଲେ—ହଁ, ଆମେ ଦୁହେଁ ଅସ୍ଥି ଦନ୍ତବାଲ୍ପ । ତେବେ ଗୋଟିଏ କଥା ଏହି ଯେ, ଯେବେ

ଦହଙ୍କୁ ଶୂଳୀ ଦବ, ତେବେ ଅମେ ମରିବୁ, ନ ହେଲେ ମରିବୁ ନାହିଁ ।

ବଗା କହିଲେ—ହେଲ ଏବେ, ନ ହେଲେ ତ ଦୋଷ ପାଇଁ କାହାକୁ ଦଣ୍ଡ ଦଅ ଯାଇ ପାରିବ ନାହିଁ । ପଛକୁ ମକଦମା ଉଠି ପାରିବ ନାହିଁ ।

ତାପରେ ଗୁରୁଶିଷ୍ୟ ଦହେଁ ବଗା ମନ୍ତ୍ରୀ ସଙ୍ଗେ ରଜାଘରକୁ ଗଲେ । ବାଟରେ ଯାଉ ଯାଉ ଗୁରୁଶିଷ୍ୟ ଦହେଁ ଭୂଗିଙ୍କା ରୂପେ ଗୋଟେ ପାଞ୍ଚ ପକାଇଲେ—ଶୂଳୀ ଦିନବା ବେଳକୁ ମୁଁ କହିବ ମୁଁ ଅଗ ଶୂଳୀ ଯିବ, ତୁ କହିବୁ ମୁଁ ଅଗ ଶୂଳୀ ଯିବି; ଏପରି ବାଦ ଲଗାଇବା । ଯା ଦେଖି ରଜା ତ କାରଣ ପଚାରିବ । ସେତେବେଳେ କହିବା, ବାଦର କାରଣ କଣ କି—ଯେ ଅଗ ଶୂଳୀ ଯିବ, ସେ ରଜା ହବ, ଯେ ପଛେ ଶୂଳୀ ଯିବ, ସେ ମନ୍ତ୍ରୀ ହବ । ଏଥିପାଇଁ ଅମ ଦହଙ୍କର ବାଦ ଲଗିଛି । ଏଥିରେ ଅମ ଫଳ ଅମେ ପାଇଯିବା ।

ମନ୍ତ୍ରୀ ଥୟ ଦହବାଲ ଗୁରୁଶିଷ୍ୟଙ୍କୁ ନେଇ ରଜାଙ୍କ ପାଖରେ ହାଜିର କରିବାରେ ସାଙ୍ଗେ ସାଙ୍ଗେ ଶୂଳୀ ଦବାର ବନ୍ଦୋବସ୍ତ ହୋଇଗଲା । ଗୁରୁଶିଷ୍ୟ ଦହେଁ ଯିମିତି ଶୂଳୀ ପାଖରେ ଠିଆ ହେଲେ, ସିମିତି ଗୁରୁ କହିଲେ—ଅଜ୍ଞା, ମୁଁ ଗୁରୁ, ମୋତେ ଅଗ ଶୂଳୀ ଦଅ । ଶିଷ୍ୟ କହିଲା —ମୁଁ ସାନ ଅଛି ଥାଉ ବଡ଼ କିମିତି ଅଗ ଶୂଳୀ ଯିବ ? ଫେର୍ ଗୁରୁ କହିଲେ—ଗୁରୁ ଅଗ ଶୂଳୀ ନ ଯିବ ଶିଷ୍ୟ ଯିବ ? ତୁ ପିଲାଟେ, ତୋ କଥା ପଛ କଥା । ଏହିପରି ଦହେଁ ବାଡ଼ିଅ ବାଡ଼ି ହବାରୁ ରଜା କାବାପରି ହୋଇ ପଚାରିଲେ—କଣ, ଶୂଳୀ ଯିବାକୁ ତ ମରିବ, ମରିବାକୁ କିମିତି ଏତେ ଅଦର କାହିଁକି ? ଗୁରୁ କହିଲେ—ଅଜ୍ଞା, ସେ

କଥା ଏପରି କାଣ୍ଡ, ଆପଣଙ୍କର ଶୁଣିବା ଦରକାର ନାହିଁ, କେବଳ ଆଗ ଶୂଳୀ ଦିଅନ୍ତୁ । ରଜା ଏ କଥା ଶୁଣି ଅତ୍ୟନ୍ତ ଚିନ୍ତିତ ହୋଇ ପଚାରିଲେ—ଆଜ୍ଞା, ଆଗ ପଛ କଥା ତ ଆମେ ବୁଝିବା, ତୁମେ ଆଗ କାରଣ କହ; ନଇଲେ ଶୂଳୀ ପାଇ ପାରିବ ନାହିଁ । ଗୁରୁ କହିଲେ—ଆପଣମାନେ ତ କେବଳ ଶୂଳୀ ଦେଖିଲେ ଚାଲୁ, କାରଣ ଜାଣି କଣ ହେବ ? ଏତେ କହିଲା ଉତ୍ତାରୁ କାରଣ ନ କହିବାରୁ ରଜାଙ୍କର ଆଗ୍ରହ ବଢ଼ିଗଲା । ତେଣୁ ସେ କାରଣ କହିବାକୁ ଏକାଜିଦ୍ ଧରିଲେ । ଗୁରୁ ରଜାଙ୍କର ଆଗ୍ରହ ବଢ଼ିଯିବାର ଦେଖି କହିଲେ—ଆଜ୍ଞା, ତେବେ ନ କହିଲେ କଣ ଚଳିବ ନାହିଁ ? ହଉ, ତେବେ ଶୁଣନ୍ତୁ । କଥା କଣ କି, ଯେ ଆଗ ଶୂଳୀ ଦେଖିବ ସେ ରଜା ହେବ, ଯେ ପଛେ ଶୂଳୀ ଦେଖିବ ସେ ମନ୍ତ୍ରୀ ହେବ । ତେବେ ମୁଁ ଗୁରୁ ଥାଉ ଥାଉ ଶିଷ୍ୟ କିପରି ଆଗ ଶୂଳୀ ଦେଖିବ ? ଛମୁ ଏ କଥା ନିଜେ ବୁଝି ଦିଅନ୍ତୁ ।

ଛମୁ ଆଉ ଏ କଥା ବୁଝିବେ କଣ, ଗୁରୁଙ୍କ ଏ କଥାରେ ତାଙ୍କ ମୁଣ୍ଡରୁ ତେନ୍ତୁଳିଆ ବଣ୍ଟ ବାମ୍ବୁଡ଼ିଲାଣି । ଭାବିଲେ କି ନା, ଯେ ଶୂଳୀ ଦେଖିବ ସେ ତ ରଜା ହେବ, ମୁଁ କଣ କରିବି ? ଏହି ଭାବନାରେ ପଡ଼ି ମନ୍ତ୍ରୀଙ୍କି କହିଲେ—ହେ ମନ୍ତ୍ରୀ ! କଥା ଶୁଣିଲଟିକି ? ପଛକୁ ଆମ ରାଜୁତି, ତୁମ ମନ୍ତ୍ରୀ ପଣିଆ ଯିବ ସିନା ? ତେବେ କଣ କରିବା ? ଏମାନଙ୍କୁ ଦଣ୍ଡ ଦେଲେ ତ ଏପରି ଅସୁବିଧା, ଦଣ୍ଡ ନ ଦେଲେ ତ ମକଦମା ତୁଟୁ ନାହିଁ । ସେଇଥିରୁ ମୁଁ ଭାବୁଛି—ଆଗପଛ ହୋଇ ଆମେ ଦୁହେଁ ଶୂଳୀ ଦେଖି ପକାଇଲେ ମକଦମା ତୁଟିଯାନ୍ତା । ଆଉ ଆମେ ଦୁହେଁ ଯିପରି ରଜା ମନ୍ତ୍ରୀ ଥିଲେଇଁ, ସିମିତି ରଜା ମନ୍ତ୍ରୀ ରହନ୍ତେଇଁ ।

ମନ୍ତ୍ରୀ କହିଲେ—ଆଜ୍ଞା, ନ ହେଲେ କି ରଜା ? ରଜା ବୋଲି ସିନା ଛମୁଙ୍କୁ ଇମିତି ବୁଦ୍ଧି ଆସିଲା ? ସବୁ ଲୋକେ ଏଡ଼େ ବଡ଼ ବୁଦ୍ଧି କାହୁଁ ପାଇବେ ? ତେବେ ଆଉ ବିଳମ୍ବ ନ କରି ସେଇ କଥା କରନ୍ତୁ ।

ରଜା ମନ୍ତ୍ରୀ ବୁଦ୍ଧି ବଳରେ ଏଇ କଥା ସ୍ଥିର କରି ଅଗ ଦିନ, ଧାଡ଼ିରେ ମନ୍ତ୍ରୀ ଶୂଳୀରେ ବସିଲେ । ରଜା ମନ୍ତ୍ରୀଙ୍କର ଏପରି ମୃତ୍ୟୁ

ରାଜ୍ୟର ଗୃହ୍ୟ ଜାଣି ଥିବା ଲୋକେ ଏପରି ମନ୍ଦ ହେବାର କାରଣ ବୁଝିଲେ । ରାଜ୍ୟର ପ୍ରଜାମାନେ ଗୁରୁଶିଷ୍ୟଙ୍କର ବୁଦ୍ଧିରେ ଏପରି ହୋଇଥିବାର ଜାଣି ଗୁରୁଶିଷ୍ୟଙ୍କୁ ଖୁବ ପ୍ରଶଂସା କଲେ । ଖରା ରଜାକୁ ବଗା ମନ୍ତ୍ରୀ ମିଳି ରାଜ୍ୟ ଚଳାଇବାରେ ପ୍ରଜାମାନଙ୍କର ବହୁତ ଦୁଃଖ ହେଉଥିଲା । ଏବେ ମରିବାରୁ ରାଜ୍ୟ ଉଚ୍ଛ୍ୱାସ ହେଲା । କପାଳକୁ ଶାନ୍ତ, ଧନ୍ୟ, ବୁଦ୍ଧିଅ ଗୁରୁଶିଷ୍ୟ ପାଇଲେ । ସବୁ ପ୍ରଜା ମିଳି ଗୁରୁଙ୍କୁ ରଜା, ଆଉ ଶିଷ୍ୟଙ୍କୁ ମନ୍ତ୍ରୀ କରିଦେଲେ । ତେଣିକି ରାଜ୍ୟ ଶାନ୍ତିରେ ଚାଲିଲା, ପ୍ରଜାସବୁ ସୁଖରେ ରହିଲେ ।



# ଚତୁର ଛେଳି

ଗୋଟିଏ ବଣରେ ଗୋଟିଏ ଛେଳି ଚରୁଥିଲା । ଦିନେବେ ଗୋଟାଏ ମହାବଳ ବାଘ ତା ଆଡ଼କୁ ଆସିଲା । ବାଘ ଛେଳିକୁ ଦେଖି ତାକୁ ଖାଇବ ବୋଲି ମନେ ମନେ ଖୁସି ହୋଇ ଫୁଲିଫାଲି ଆସୁଥାଏ । ଏଣେ ଛେଳି ବାଘକୁ ଦେଖି ଭାବିଲା—ଆଜି ବାଘ ହାବୁଡ଼େ ପଡ଼ିଲିଣି, ବଞ୍ଚିବା କଥା ସେମିତି ସେମିତି । ଏଥିକି ଉପାୟ କଣ ? ଅଚ୍ଛା, ଗୋଟେ ହୁରହୁସ ଲଗାଏ । ଯେବେ ବଞ୍ଚିଗଲି ତ ବଞ୍ଚିଗଲି, ନ ହେଲେ ତ ମତେ ନିଶ୍ଚେ ଖାଇବ । ଏହା ବୋଲି ଛେଳି ଗୋଟେ ଢିପ ଉପରକୁ ଯାଇ ଅଗ ଗୋଡ଼ ଯୋଡ଼ାକ ଗୋଟେ ବୁଦା ଉପରେ ଟେକି କରି ରଖି ଆଖି ତରାଟି ବାଘକୁ ଚାହିଁ ଠିଆ ହେଲା । ବାଘ ଛେଳିର ଏ ଢଙ୍ଗ ଦେଖି କାବାପରି ଠିଆ ହୋଇ ଭାବିଲା—କିରେ, ଏ କଣ ତେବେ ଛେଳି ନୁହେଁ ? ଯେବେ ଛେଳି ହୋଇ ଥାନ୍ତା, ତେବେ ମୋତେ ଦେଖି ତ ଥରହରି କମ୍ପୁଥାନ୍ତା । ଏ ତ ଓଲଟି କଣ ମୂର୍ତ୍ତି ଦେଖାଇ ଦମ୍ଭରେ ଠିଆ ହେଉଛି । ଅଚ୍ଛା, ଟିକିଏ ପାଖକୁ ଯାଇ ପଚାରେ । ବାଘ ଛେଳି ପାଖକୁ ଯାଇ ପଚାରିଲା—କିଏ, ତୁମେ ଏମିତି ଚାହୁଁଛ ? ଛେଳି କହିଲା—ଆମେ ଏମିତି ଚାହୁଁ । ବାଘ ପଚାରିଲା—ତୁମେ ଖାଅ କଣ ? ଛେଳି କହିଲା—ଆମର ତିନି ଧୂପ ହୁଏ । ଆମର ପହିଲି ଧୂପରେ ଗୁଣ୍ଡିଏ କୋମଳ ତୃଣ ବଲ୍ଲଭ ହୁଏ । ଦୋପହର ଧୂପରେ ଆମେ ଗୋଟିଏ ବାଘ ଆହାର କରୁ । ସଞ୍ଜ ଧୂପରେ ତିନୋଟି ବାଘ ଆଉ ଗୋଟିଏ ସିଂହ ଭୋଜନ କରୁ ।

ବାଘ ତ ଛେଳିର ମୂର୍ତ୍ତିରେ ଡରି ଯାଇଥିଲା, ଯୁଷିଣି ଏତିକି ଶୁଣିଲା, ବାଘ ଆଉ ରହେଟି କି ? ଏକମୁହାଁ ହୋଇ ଚମ୍ପଟ କଲା । ଗୋଟେ ଜାଗାରେ ଗୋଟିଏ ବିଲୁଆ ବୁଲୁଥିଲା । ସେ ବାଘର ଏ ଦୌଡ଼ ଦେଖି ବାଘକୁ ଡାକି ପଚାରିଲା, "କିରେ ଭାଇ ! ତୁ କାହିଁକି ଏମିତି

ଦୌଡୁଛୁ ?" ବାଘ କହିଲା "ଭାଇ ! କଣ କହିବି ? ଆଜି ତ ମରିଥାନ୍ତି ।" ବାଲୁଆ କହିଲା "କାହିଁକି ?" ବାଘ କହିଲା "ଭାଇ, ମତେ ଏତେ ବୟସ ହେଲାଣି, ମୁଁ ଆଜି ଯାହା ଦେଖିଲି, ଏମିତି ଘାବ ମୋ ଘାବନରେ ଦେଖି ନ ଥିଲି ।" ବାଲୁଆ କହିଲା, "କଣ ଦେଖିଲୁ କହ କହ ।" ବାଘ କହିଲା "ଜାଣିଲୁ, ଆଜି ବୁଲି ବୁଲି ଗୋଟିଏ ନୂଆ ଘାବ ଦେଖିଲି । ସେ ଛେଳିପରି ଦିଶୁଛି । ମୁଁ ଛେଳି ବୋଲି ବିଚାରି ତା ପାଖକୁ ଗଲା ବେଳକୁ ସେ ଆଖି କାନ ତରାଟି ମତେ ତ ମିଟିମିଟି କରି ଚାହିଁଲା । ସେଠିଉଁ ମୋ ମନ ଟିକିଏ ଦବିଲା । ତାପରେ ଧୀର କରି ତା ପାଖକୁ ଯାଇ ପଚାରିଲି, 'କିଏ ? ତୁମେ ଏମିତି ଚାହୁଁଛ ?' ସେଠୁଁ ସେ କହିଲା, 'ଆମେ ଏମିତି ଚାହୁଁ ।' ସେଠୁଁ ମୋ କଥା ମୁଁ ପଚାରିଲି, 'ତୁମେ କଣ ଖାଅ ?' ସେ କହିଲା,'ଆମର ଖିଆ ଧୂପ । ଆମର ସକାଳ ଧୂପରେ ଗୁଡ଼ିଏ କୋମଳ ତୃଣ ବକ୍ଷଣ ହୁଏ । ଦିପହର ଧୂପରେ ଗୋଟିଏ ବାଘ ଆହାର କରୁ । ସଞ୍ଜ ଧୂପରେ ଛଅଗୋଟି ବାଘ ଆଉ ଗୋଟିଏ ହାତୀ ଭୋଜନ କରୁ ।' ଏହା ଶୁଣି ଶୁଣିଲି ମୋର ତ ହାଡ଼ଚମ ହେଲା,ପଳାଇ ଆସୁ ଆସୁ ବାଟ ଅଣ୍ଟିଲା ନାହିଁ ।"

ବାଲୁଆ ବାଘର ଏ କଥା ଶୁଣି ହସି ହସି କହିଲା—ତୁ ଜଙ୍ଗଲର ମାଲିକ ହୋଇ ତୋର ଏତେ ଡର ? ସେ ଇମିତି କି ଘାବଟେ ଯେ ତାକୁ ଦେଖି ତୋତେ ପୁଣି ଡର ମାଡ଼ୁଛି ? ଅଚ୍ଛା, ମୋ ସାଙ୍ଗରେ ଆସ, ଦୁହେଁ ଯାଇ ଦେଖିବା, ସେ କି ଘାବ । ବାଘ କହିଲା—ନାହିଁ ଭାଇ, ମୋ କଥା ଘଟିବ ନାହିଁ । ତୋର ଯେବେ ମରିବାକୁ ଭୟ ନାହିଁ, ତେବେ ତୁ ଯା, ମୁଁ ଯିବି ନାହିଁ । ବାଲୁଆ କହିଲା—ଅଚ୍ଛା, ତୋତେ ଯେବେ ଏତେ ଭୟ ଲାଗୁଛି, ତେବେ ମୋ ଲାଙ୍ଗୁଡ଼ରେ ତୋ ଲାଙ୍ଗୁଡ଼ ବାନ୍ଧିଦେବା । ମୁଁ ଆଗରେ ଚାଲିବି, ତୁ ମୋ ପଛେ ପଛେ ଯିବୁ । ଆଉ ଭୟ କଣ ? ବାଲୁଆ ଏତେ ବୁଝା ଶୁଝା କରିବାରୁ ବାଘ ଯୋଡ଼ାମୋଡ଼ା ହୋଇ ମାନିଲା । ଦୁହିଁଙ୍କ ଲାଙ୍ଗୁଡ଼ ବନ୍ଧା ହେଲା । ବାଲୁଆ ଆଗେ

ଆଗେ ଚାଲିଲା, ବାଘ ତା ପଛେ ପଛେ ଗଲା । ବାଘ ଭଲ୍ଲୁଅ ଦୂରେଛି ଛେଳିଟି ପାଖା ଲାଗି ହେବାକୁ ଚେଷ୍ଟା ନାହିଁ ଦେଖି ଭାବିଲା—ମୁଣ୍ଡି ତ ସେହି ବାଘ ଅଟିଲଣି, ତା ମ... ରେ ମୁଁ ବାନ୍ଧି ... । ଭଲ୍ଲୁଅ ଗୁଡ଼ାକ ତ ବୁଦ୍ଧିମାନ୍, କଷ୍ଟେ ଏଠି ମଲି; ଏଥର ବାଘ ହାତୁଡ଼ୁ ଖସିବା ସହଜ ନୁହେଁ । ତେବେ ଗୋଟେ ଭୁରକୁସ ମାରି ଦେଖେ । ଯେବେ ଖସିଗଲି ତ ଖସିଗଲି, ନ ହେଲେ ତ କଷ୍ଟେ ଖାଇବ । ଛେଳି ଏଇ କଥା ଭାବି ପୁଣି ଅଗ ଥର ପରି ଗୋଟେ ନୂଦ ଉପରେ ଠିଆ ହୋଇ ଅଗ ଗୋଡ଼ ଯୋଡ଼ାକ ... ଗଛ ଦେହରେ ଠେକିରଖି ଅଖି ତରାଟି ବାଘ ଅଡ଼ ଭଲ୍ଲୁଅକୁ ଚାହିଁଲା ।

ତାପରେ ଭଲ୍ଲୁଅକୁ କହିଲା—ହଁରେ, ତୋ ବାପ ଥିଲେ ଯେ ଗଛ ନ ପାଇ ପୁଞ୍ଜେ ପୁଞ୍ଜେ ବାଘ ଲାଙ୍ଗୁଡ଼ରେ ବାନ୍ଧି ହାଜର କରୁଥିଲା । ତୁ ଏତେ ବେଳକୁ ଗୋଟିଏ ବାଘ ବାନ୍ଧିକରି ଅଣୁଛୁ ? ଅଚ୍ଛା, ତୋ ଖବର ମୁଁ ବୁଝୁଛି । ବାଘ ଏତକ ଯେହୁଁ ଶୁଣିଲା, ତହୁଁ ଭୟରେ ତା ଛାତି ଧଡ଼ ଧଡ଼ ହେଲା । ଦେଖିଲା ଯେ, "ଏ ଭଲ୍ଲୁଅ ଦମ୍ଭ ଦେଖାଇ ମୋତେ ଅଣିଛି, ତା ଉପରେ ତ ଯାର ଇମିତି ହାକିମ, ଏ ମୋତେ କଣ ରଖିବ ? ପୁଣି ଯେବେ ଭଲ୍ଲୁଅ ଅପଣା ଦେଣି ହାଜର କରିବାକୁ ମୋତେ ପଠାପଠି କରି ହାଜର କରୁଥିବ, ତେବେ ତ ମଲି । ଅଜ ଇଠାରୁ ରହିବ କଣ" ବୋଲି ମାଇଲା ଡିଆଁ । ଏଣେ ବାଘ ଲାଙ୍ଗୁଡ଼ରେ ତ ଭଲ୍ଲୁଅ ଲାଙ୍ଗୁଡ଼ ବନ୍ଧା । ବାଘ ବଳ ତ ଭଲ୍ଲୁଅ ବଳଠାରୁ ସରସ । ବାଘ ଯହୁଁ ଦୌଡ଼ିଲା, ଅଡ଼ ଭଲ୍ଲୁଅ ସମ୍ଭାଳ ପଡ଼େ କିଁ ? ଭଲ୍ଲୁଅ ବଡ଼ରି ଝଣ୍ଟାଝୁଣ୍ଟାରେ ଝିଙ୍କା ଓଟରି ହୋଇ ଫଡ଼ା ଫଡ଼ା ହୋଇ ଚିରି ମଲା । ଛେଳି ନିଜ ବୁଦ୍ଧିରେ ରକ୍ଷା ପାଇ ଚରିବୁଲି ସନ୍ଧ୍ୟା ବେଳକୁ ଗାଁ ଭିତରକୁ ଗଲା ।

ବୁଦ୍ଧି ଯାହାର ଅଛି, କେହି ତାର କିଛି କରିପାରିବେ ନାହିଁ ।

